# "ଯ୍ୟାକ୍ସ ବନେଇବା ପିଲାଙ୍କ ଖେଳ
# ବିଗ୍ଡ଼ି ଗଲେ ଲାଗେନା ବେଳ"

## -ଫେଭି ଫେରୀ

ଅଲୋଡ଼ା ଜିନିଷ, କତୁରି ଆଣ
ଖଣ୍ଡ ଖଣ୍ଡ କାଟ ଇଚ୍ଛା ପ୍ରମାଣ ।

ଫେଭିକଲ ଲଗାଅ, କଟା ବସ୍ତୁ ସଜାଅ
ଇଚ୍ଛା ପ୍ରମାଣେ ରୂପ ଆକାରକୁ ଦିଅ ।

କଣ୍ଢେଇ, ହାତି, ଘୋଡ଼ା, ହରିଣ, ଠେକୁଆ
ଗଞ୍ଜା, ମୟୂର, ବଣି, ଶୁଆ, ଶାରି, ଚଟିଆ ।

ଅଲୋଡ଼ା ଜିନିଷ, କନା ଚିରା-ଫଟା
କାଚ ହେଉକି କାଗଜ ଅବା କାଠ-ପଟା ।

ସବୁ କିଛି ଲଗି ପାରିବ
ସବୁ କିଛି ବନେଇ ହେବ ।

ଦାଗ ଲଗେନି, ଅଳିଆ ହୁଏନି
ସଫାସୁତୁରା କାମ ବୋଲି ବି ଚିହ୍ନେନି ।

ତମ କାମ ଦେଖି, ସଭିଏଁ କହନ୍ତି ବାହାବା
ତମେ କିନ୍ତୁ କହ ଫେଭିକଲ ଏମ୍ ଆର୍ ବାହାବା !

ପୋର୍କୀ ପିଗ୍ କେମିତି ବନେଇବ, ସେତକ
ଜାଣିବାକୁ ତଳ କୁପନଟି ଭରି ଡାକରେ ପଠାଅ :
'ଫେଭି ଫେରୀ', ପୋଷ୍ଟ ବାକ୍ସ ନ. ୧୧୦୮୪,
ବମ୍ବେ-୪୦୦ ୦୨୦

ପୋର୍କୀ ପିଗ୍ କେମିତି ବନେଇବ, ସେତକ ଜାଣିବାକୁ
ତଳ କୁପନଟି ଭରି ଡାକରେ ପଠେଇବା ଠିକଣା :
'ଫେଭି ଫେରୀ', ପୋଷ୍ଟ ବାକ୍ସ ନ. ୧୧୦୮୪, ବମ୍ବେ-୪୦୦ ୦୨୦

ନାମ : ______________________

ବୟସ : ______________________

ଠିକଣା : ______________________

______________________

ସହର : ______________________

ରାଜ୍ୟ : __________ ପିନ୍‌କୋଡ୍ : __________

ତମକୁ ଆମ ଇଙ୍ଗିଲ 'ଫେଭିକଲ୍' ମିଳିଲା କି ? ହଁ/ନାହିଁ

(Ch)

ଫେଭିକଲ ଏମ୍ ଆର୍

ସିନ୍ଥେଟିକ ଅଢେସିଭ

FEVICOL

## ଉତ୍ତମ କାମ, ଉତ୍ତମ ନାମ, ଫେଭିକଲ୍'ର ଇଏ ପରିଣାମ ।

# ନମ୍ବର ନଡ଼ିଆ ତେଲ ପାଇଁ
# ଅପେକ୍ଷା କରି ବସିଛନ୍ତି, କହିଲେ ?

ଅନ୍ୟାନ୍ୟ ସର୍ବତ୍ର ପାରାଶୁଟ ନଡ଼ିଆ ତେଲ ଯେ କେତେ ଜନପ୍ରିୟ
ହୋଇଛି ତାହା ଆପଣ ନିଶ୍ଚୟ ଶୁଣିଥିବେ ! ଏବେ ତାହା ଅବଶ୍ୟ
ଆପଣଙ୍କ ଦୁଆର ମୁହଁରେ ଆସି ପହଞ୍ଚିଲା—
ଖାଲି ଟିକିଏ ସମୟ ଲାଗିଲା !

ଆଧୁନିକ, ସୁବିଧାଜନକ ଏବଂ ସମ୍ପୂର୍ଣ୍ଣ ଖାଣ୍ଟି ଏହି ପାରାଶୁଟ
ନଡ଼ିଆ ତେଲ ଏଠାକୁ ଆଣିବାର କାରଣ
କ'ଣ ଜାଣନ୍ତି କି ! ଏହାର ପୁଷ୍ଟିକର ଗୁଣ — ଯାହା
ଆପଣଙ୍କ ସଘନ ଦୀର୍ଘ କୁନ୍ତଳ'ର ପ୍ରାପ୍ୟ !

# ପାରାଶୁଟ
## ନଡ଼ିଆ ତେଲ



ଶେଷକୁ ଶ୍ରେଷ୍ଠ ଜିନିଷଟି
ହିଁ ଆସି ପହଞ୍ଚିଲା !



# ନମ୍ବର ନଡ଼ିଆ ତେଲ ପାଇଁ
# ଅପେକ୍ଷା କରି ବସିଛନ୍ତି, କହିଲେ ?

ଅନ୍ୟାନ୍ୟ ସର୍ବତ୍ର ପାରାଶୁଟ ନଡ଼ିଆ ତେଲ ଯେ କେତେ ଜନପ୍ରିୟ
ହୋଇଛି ତାହା ଆପଣ ନିଶ୍ଚୟ ଶୁଣିଥିବେ ! ଏବେ ତାହା ଅବଶ୍ୟ
ଆପଣଙ୍କ ଦୁଆର ମୁହଁରେ ଆସି ପହଞ୍ଚିଲା—
ଖାଲି ଟିକିଏ ସମୟ ଲାଗିଲା !

ଆଧୁନିକ, ସୁବିଧାଜନକ ଏବଂ ସମ୍ପୂର୍ଣ୍ଣ ଖାଣ୍ଟି ଏହି ପାରାଶୁଟ
ନଡ଼ିଆ ତେଲ ଏଠାକୁ ଆଣିବାର କାରଣ
କ'ଣ ଜାଣନ୍ତି କି ! ଏହାର ପୁଷ୍ଟିକର ଗୁଣ — ଯାହା
ଆପଣଙ୍କ ସଘନ ଦୀର୍ଘ କୁନ୍ତଳ'ର ପ୍ରାପ୍ୟ !

# ପାରାଶୁଟ
## ନଡ଼ିଆ ତେଲ



ଶେଷକୁ ଶ୍ରେଷ୍ଠ ଜିନିଷଟି
ହିଁ ଆସି ପହଞ୍ଚିଲା !



ଯାଙ୍କମାନେ ପରିବାରର ମନପସନ୍ଦିଆ ଜଳଖିଆ ବନାନ୍ତି ନାହିଁ କି?






# ସହଜରେ ଇଡଲି ବନାନ୍ତୁ— ପୂର୍ବରୁ କେବେ ବନେଇ ନଥା'ନ୍ତୁ ପଛେ-ହକିନ୍ସ ଇଡଲି ଷ୍ଟାଣ୍ଡ ଆଉ କୁକର, କାମ ସହଜିଆ କରିଦେବ!

## ଫୁଲା ଫୁଲା ସ୍ୱାଦିଷ୍ଟ ଇଡଲି ମାତ୍ର ୬ ମିନିଟରେ ବନାନ୍ତୁ!

ହକିନ୍ସ ଇଡଲି ଷ୍ଟାଣ୍ଡ ଯୋଗେ, ହକିନ୍ସ ପ୍ରେସର କୁକରରେ ସ୍ୱାଦିଷ୍ଟ ଇଡଲି ବନେଇବା ବହୁତ ସହଜ—ଆପଣ ପ୍ରଥମ କରି ବନାଉଥା'ନ୍ତୁ ପଛେ। ଇଡଲି ପିଠଉ, ସମ୍ବର ଓ ଚଟଣି ବନେଇବାର ପୂରା ନିର୍ଦ୍ଦେଶ କାର୍ଟନ୍ ଉପରେ ଦିଆଯାଇଛି। ଇଡଲି ଷ୍ଟାଣ୍ଡ ଚାରୋଟି ସାଇଜରେ ମିଳୁଛି—୧୨, ୧୮, ୨୪ ତଥା ୬୩ ଇଡଲି କରିପାରିବା ସକାଶେ। ଏହି ଚାରି ସାଇଜ ସହିତ ଖାପ ଖାଉଥିବା ହକିନ୍ସ ପ୍ରେସର କୁକର ସାଇଜଗୁଡ଼ିକ ଯଥାକ୍ରମେ ୫, ୬.୫, ୧୦ ଓ ୨୨ ଲିଟର ଅଟେ। ପରିବାରବର୍ଗଙ୍କୁ ଘରେ ହିଁ ସ୍ୱାଦିଷ୍ଟ, ପୋଷକ ଜଳଖିଆ ଦିଅନ୍ତୁ!

## ଡିଜାଇନ କରିବାଠୁ ଡେଲିଭରୀ ପର୍ଯ୍ୟନ୍ତ ପ୍ରତ୍ୟେକ ସୋପାନରେ ଅତ୍ୟଧିକ ଯତ୍ନ

ହକିନ୍ସ ପ୍ରେସର କୁକର ଡିଜାଇନ
* ନିରାପଦ ନ ହେବା ଯାଏଁ ଢାଙ୍କୁଣୀ ଖୋଲିବାକୁ ଦିଏନା
* ସେଫ୍‌ଟୀ ଭଲ୍‌ଭକୁ ଅଧିକ ସୁରକ୍ଷା ଦେବା ଭଳି ସ୍ଥାନରେ ବସାଏ
* ଗ୍ୟାସ୍‌କେଟ୍‌କୁ ଦୀର୍ଘସ୍ଥାୟୀ କରାଏ
* ରାନ୍ଧଣା ଶୀଘ୍ରତର କରାଏ

ହକିନ୍ସ ଠାରେ ମାଲ'ର ଚୟନ ଓ ପରଖ, ନିର୍ମାଣ'ର ପ୍ରତିଟି ସୋପାନ, ପ୍ୟାକେଜିଙ୍ଗ ଠୁ ପରିବହନ ପର୍ଯ୍ୟନ୍ତ, ପ୍ରତି କ୍ଷେତ୍ରରେ ଅତ୍ୟଧିକ ଧ୍ୟାନ ଦିଆଯାଏ। ତା'ପରେ ଯାଇ ଆପଣଙ୍କ ହାତରେ ପହଞ୍ଚେ ସର୍ବୋତ୍ତମ କୁକର!

## ମାଗଣା ସେବା ଓ ଅସଲି ଯନ୍ତ୍ରାଂଶ

କେବଳ ହକିନ୍ସ ନିଜର ୧୪୭ ଟି ଅଧିକୃତ ସେବା କେନ୍ଦ୍ର ଜରିଆରେ ଅପଣଙ୍କୁ ମାଗଣା ସେବା ଯୋଗେଇଦିଏ—ଭାରତରେ ଯେ କୌଣସିଠି। ତୁରନ୍ତ ରିପେୟାରିଙ୍ଗ କାମ ହାତକୁ ନେବା, ଅସଲ ଯନ୍ତ୍ରାଂଶ ଓ ପ୍ରଶିକ୍ଷିତ ମେକାନିକ୍‌ଗଣ ଆପଣଙ୍କୁ ସେବା ଦେବା ଲାଗି ସର୍ବଦା ତତ୍ପର। ଅବଶ୍ୟ, ଯଦି କେବେ ଆପଣଙ୍କୁ ସେସବୁର ଆବଶ୍ୟକତା ପଡ଼େ!

## ଅଧିକ ମିତବ୍ୟୟିତା ଏବଂ ସୁବିଧା— ୩୮ ଟି ଯାକ ମଡେଲ ଦ୍ୱାରା!

୨ ରୁ ୨୨ ଲିଟରରେ ପାଇବେ ୧୦ ଟି ମଡେଲ'ର କୁକର। ଛୋଟ ସାଇଜଗୁଡ଼ିକ ନବଦମ୍ପତିଙ୍କ ଲାଗି ତ ଆଦର୍ଶ, ପୁଣି ଛୁଆ କିମ୍ବା ବୃଦ୍ଧମାନଙ୍କ ଲାଗି ବିଶେଷ ଖାଦ୍ୟ (ଡାଏଟ୍) ପ୍ରସ୍ତୁତି ଲାଗି ବି ବେଶ୍ ଉପଯୋଗୀ। ଆଉ ବଡ଼ ସାଇଜଗୁଡ଼ିକ ଯୌଥ ପରିବାର ତଥା ଉତ୍ସବ ପ୍ରସଙ୍ଗରେ ତ ବେଶ୍ ମିତବ୍ୟୟୀ ପ୍ରମାଣିତ ହୁଏ।

କୁକରଗୁଡ଼ିକ (୪ ରୁ ୨୨ ଲିଟର) ସେପରେଟର ବିନା କିମ୍ବା ସହିତ ମିଳେ; ଆଉ ସେପରେଟର ଯୋଗେ ଆପଣ ଦୁଇ ରୁ ଚାରିଟି ବ୍ୟଞ୍ଜନ ଥରକେ ରାନ୍ଧିପାରନ୍ତି। କୁକରଗୁଡ଼ିକ (୫ ରୁ ୧୨ ଲିଟର) ଷ୍ଟେନ୍‌ଲେସ ଷ୍ଟିଲ ସେପରେଟର ସହିତ ବି ମିଳୁଛି।

କୁକରଗୁଡ଼ିକ (୪ ଓ ୫ ଲିଟର) ମିଳୁଛି ନୂଆ ସୋଜ୍ଜ୍ୱଳ ଧୂସରିଆ **ସାଟିଲନ୍**™ ଫିନିଶ୍‌ରେ, ଯାହା ଚଅଳ ଗୌରମ କରିବା ସାଥିରେ ଦୀର୍ଘସ୍ଥାୟୀ ସୁନ୍ଦରତା—ଉଭୟ ଦିଏ। ନୂଆ **ସାଟିଲନ୍**™ ପଷ୍ଟବାଲା ହକିନ୍ସ ଫ୍ୟୁଚ୍ୟୁରାରେ ଅନେକାନେକ ସୁବିଧା ଅଛି। ୫ ଲିଟରବାଲା କୁକର ଷ୍ଟେନ୍‌ଲେସ ଷ୍ଟିଲରେ ବି ମିଳୁଛି।

କୁକରଗୁଡ଼ିକ (୪ ରୁ ୮ ଲିଟର) ମିଳୁଛି ଷ୍ଟାଣ୍ଡାର୍ଡ ବେସ୍ ବା ୬.୩ ମି.ମି. ବହଳା ହେଭୀ ବେସ୍‌ରେ, ଯାହା ପ୍ରେସର କୁକିଙ୍ଗ ପରିର ରାନ୍ଧିବା-ସିଝେଇବା ଲାଗି ବେଶ୍ ଉପଯୋଗୀ।

## ହକିନ୍ସ ପ୍ରେସର କୁକର ହାୟାର-ପର୍ଚେଜ ବା ନଗଦ-ଉଧାରରେ

ପ୍ରାଥମିକ ଦେୟ ଟ ୧୦/- (ବାକି ପରିମାଣ ଛଅଟି ମାସିକ କିସ୍ତିରେ), ହକିନ୍ସ ଅଧିକୃତ ହାୟାର-ପର୍ଚେଜ ଯୋଜନା ଅନ୍ତର୍ଗତ ଦେବାକୁ ହୁଏ। ବିକ୍ରେତାମାନଙ୍କ ଠିକଣା ବା ଅନ୍ୟ କୌଣସି ବିବରଣୀ ଲାଗି ଲେଖନ୍ତୁ: ହକିନ୍ସ ଡିପାର୍ଟମେଣ୍ଟ ୬୩୩, ପୋଷ୍ଟ ବାକ୍ସ କ୍ର. ୬୪୮୧, ବମ୍ବେ-୪୦୦ ୦୧୬।

ହକିନ୍ସ— ଆପଣଙ୍କର ଜଣେ ପ୍ରିୟ ସାଙ୍ଗ!

**ହକିନ୍ସ®**

**ପ୍ରେସର କୁକର**

**ସର୍ବାଧିକ ସୁରକ୍ଷିତ, ସବୁଠୁ ଶୀଘ୍ର ରାନ୍ଧିଦିଏ ସ୍ୱାଦିଷ୍ଟ ଖାଦ୍ୟ**

# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣି'
ସଞ୍ଚାଳକ : ନାଗି ରେଡ୍ଡୀ

ଏ ସଂଖ୍ୟାରେ ପରିବେଷିତ ଭାରତ-କାହାଣୀ ଚିତ୍ରକଥାରେ ଗଙ୍ଗାନଦୀ ସମ୍ପର୍କରେ ଯେଉଁ କିମ୍ବଦନ୍ତୀ ଦିଆଯାଇଛି, ତାହା ଯେପରି ଚିତ୍ତାକର୍ଷକ, ସେହିପରି ତାତ୍ପର୍ଯ୍ୟପୂର୍ଣ୍ଣ । ଆଗାମୀ ସଂଖ୍ୟାରେ ଦିଆଯିବ ସ୍ୱର୍ଗରୁ ଭୂପୃଷ୍ଠକୁ ଗଙ୍ଗାବତରଣର କାହାଣୀ ।

## ଅମରବାଣୀ

ନରତ୍ୱଂ ଦୁର୍ଲଭଂ ଲୋକେ, ବିଦ୍ୟାଂ ତତ୍ର ସୁଦୁର୍ଲଭା ।
ବିବେକୋ ଦୁର୍ଲଭସ୍ତତ୍ର, ଦାତୃତ୍ୱଂ ଚ ବିଶେଷତଃ ।।

[ମଣିଷ ଜନ୍ମ ପାଇବା ସହଜ ନୁହେଁ, ବିଦ୍ୟାଲାଭ ଆହୁରି ଦୁର୍ଲଭ, ବିବେକ ତାହା ତୁଳନାରେ ବି ଦୁର୍ଲଭ ଏବଂ ଦାନଶୀଳତା (ବିବେକ ସହ) ଆହୁରି ବିରଳ ।]

ବର୍ଷ : ୧୯ ଅଗଷ୍ଟ ୧୯୮୫ ଅଙ୍କ : ୨

ପ୍ରତିସଂଖ୍ୟା : ଟ. ୨-୦୦ :: ବାର୍ଷିକ ମୂଲ୍ୟ : ଟ. ୨୪-୦୦



# ଜହ୍ନମାମୁଁ ସମ୍ବାଦ-ବିଚିତ୍ରା

## ଜହ୍ନରେ ଯଦି ମହମବତୀ ଜଳେ···



ଜହ୍ନରେ ମହମବତୀଟିଏ ଜଳିଲେ ଆମେ ପୃଥିବୀ ପୃଷ୍ଠରୁ ତାହା ଦେଖିପାରିବା କି? ହଁ, ୧୯୯୩ ବେଳକୁ ବର୍ତ୍ତମାନ ପ୍ରସ୍ତୁତ ହେଉଥିବା ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଦେଖି ହେବ । ଏ ଯନ୍ତ୍ର କାଲିଫର୍ଣ୍ଣିଆର ପାଲୋମାର ପର୍ବତ ଉପରେ ସ୍ଥାପିତ ହେବ ।

## ତିମିର ସଙ୍ଗୀତ ପ୍ରେମ

ରୁଷିଆ ଓ ଆଲାସ୍କା ଭିତରେ ଥିବା ଜଳଖଣ୍ଡ ବରଫ ପାଲଟି ଯିବା ଫଳରେ ହଜାରେ ସରିକି ତିମିମାଛ ତାହି ଭିତରେ ଅଟକି ରହିଗଲେ । ରୁଷିଆର ନୈବାହିନୀ ସେ ବରଫ ଭିତର ଦେଇ ଗୋଟାଏ ନାଳ ଖୋଳିଲେ । କିନ୍ତୁ ଭୟଭୀତ ତିମିମାଛମାନେ ସେ ନାଳ ଦେଇ ବାହାରିବାକୁ ନାରାଜ! ତିମିମାନେ ସଂଗୀତ ଭଲ ପା'ନ୍ତି ବୋଲି ନାନା ଗୀତ ବାଦ୍ୟ ବଜାଗଲା । ଶେଷକୁ ଶାସ୍ତ୍ରୀୟ ସଂଗୀତ ବାଜିବାରୁ ସେମାନେ ତାକୁ ଅନୁସରଣ କରି ସମୁଦ୍ର ଭିତରକୁ ବାହାରି ଆସିଲେ ।



## ସ୍ୱାଗତ ଗ୍ରହାନ୍ତର-ପର୍ଯ୍ୟଟକ!



ଦିନେ ଯଦି ଅନ୍ୟ ଗ୍ରହର କେହି କେହି ଲୋକ ଆସି ପୃଥିବୀରେ ପହଞ୍ଚିବେ, ସେମାନଙ୍କ ବିମାନ ଅବତରଣ କରିବ କେଉଁଠି? ମେକ୍ସିକୋର ପାର୍ବତ୍ୟ ଅଞ୍ଚଳରେ ଆଣ୍ଟୋନିଓ ଆଲ୍ଭି ନାମକ ଜଣେ ବ୍ୟକ୍ତି ଗ୍ରହାନ୍ତରର ଆଗନ୍ତୁକଙ୍କ ସକାଶେ ଗୋଟାଏ ବିଶେଷ ବିମାନ ବନ୍ଦର (ନା ଉଡ଼ନ୍ତା ଥାଳିଆ ବନ୍ଦର?) ନିର୍ମାଣ କରୁଛନ୍ତି ।

## ଜାଣନ୍ତି କି?

୧. ଭୂପୃଷ୍ଠର କେତେ ଅଂଶ ସମୁଦ୍ରମୟ?
୨. ସୂର୍ଯ୍ୟର ସମୀପବର୍ତ୍ତୀ ଗ୍ରହ କିଏ?
୩. ଗ୍ରହମଣ୍ଡଳରେ ଶୀତଳ ଗ୍ରହ କିଏ?
୪. ସବୁଠାରୁ ବଡ଼ ଗ୍ରହ କିଏ?
୫. ପୃଥିବୀର ବ୍ୟାସାର୍ଦ୍ଧ କେତେ?

(୬୪ ପୃଷ୍ଠାରେ ଉତ୍ତର ଦେଖନ୍ତୁ)



# କାଉଙ୍କ ସଂଖ୍ୟା କେତେ?

ମହୀପୁର ରାଜ୍ୟର ରାଜା ଚନ୍ଦ୍ରପ୍ରକାଶ ଅନ୍ତଃପୁର ଭିତରେ ନିଜ ପୁଅର ଶିକ୍ଷାଦୀକ୍ଷା ବିଷୟରେ ରାଣୀଙ୍କ ସହ କଥାଭାଷା ହେଉଛନ୍ତି, ସେତିକି-ବେଳେ ହଠାତ୍ ଗୋଟାଏ କାଉ ଅନ୍ତଃପୁର ଭିତରକୁ ପଶି ଆସିଲା । ରାଣୀଙ୍କ ଦାସୀମାନେ ସଙ୍ଗେ ସଙ୍ଗେ ଅବଶ୍ୟ କାଉକୁ ଘଉଡ଼ାଇ ଦେଲେ, କିନ୍ତୁ ରାଜା ବିରକ୍ତ ହୋଇ ମନ୍ତ୍ରୀଙ୍କୁ କହିଲେ, "କାଉଙ୍କ ପ୍ରାଦୁର୍ଭାବ ଆମ ରାଜ୍ୟରେ ବହୁତ ବେଶି ହୋଇ ଗଲାଣି । ଏ ବିଷୟରେ କିଛି କରାଯାଇ ପାରିବ ନାହିଁ ?"

"ଜରୁର୍ କରାଯାଇ ପାରିବ, ମହାରାଜ! ଏ ଦିଗରେ ମୁଁ ଯଥାବିଧି ପଦକ୍ଷେପ ନେବି ।" ମନ୍ତ୍ରୀ କହିଲେ ।

ପରଦିନ ମନ୍ତ୍ରୀ ତାଙ୍କ ସହକାରୀମାନଙ୍କୁ ଡକାଇ ବୈଠକରେ ବସିଲେ ଓ କହିଲେ, "ଆମ ରାଜ୍ୟରେ କାଉ ସଂଖ୍ୟା ବହୁତ ବଢ଼ି ଗଲାଣି । କିଛି କାଉଙ୍କୁ ମାରିଦେବା ଦରକାର ।"

"ମଂତ୍ରୀବର! କେତେ କାଉ ମରା ହେବେ, ସେକଥା ସ୍ଥିର କରିବା ଆଗରୁ କାଉଙ୍କ ସଂଖ୍ୟା ନିରୂପଣ ହେବା ଆବଶ୍ୟକ!" ଜଣେ ସହକାରୀ ମଂତ୍ରୀ କହିଲେ ।

"ହିଁ, ହିଁ, ତାହା ନହେଲେ କିପରି ହେବ!" ଅନ୍ୟ ତିନିଜଣ ସହକାରୀ ମଂତ୍ରୀ ଏ ପ୍ରସ୍ତାବ ସହ ଏକମତ ହେଲେ ।

"ଭଲ କଥା । ରାଜ୍ୟ ଯାକ ଡେଙ୍ଗୁରା ଦେଇଦିଅ—ଯିଏ କାଉଙ୍କ ସଂଖ୍ୟା କହିଦେଇ ପାରିବ, ସିଏ ପୁରସ୍କାର ପାଇବ । ଏପାଇଁ ମୁଁ ହଜାରେ ସ୍ୱର୍ଣ୍ଣମୁଦ୍ରା ମଞ୍ଜୁର କଲି । କିନ୍ତୁ ଯିଏ କହିଦେଇ ପାରିବ ବୋଲି କହି ଭୁଲ୍ ସଂଖ୍ୟା କହିବ, ସିଏ ମାଡ଼ ଖାଇବ ।" ମଂତ୍ରୀ ଘୋଷଣା କଲେ ।

ଉର୍ମିଳା



ରାଜ୍ୟଯାକ ମନ୍ତ୍ରୀଙ୍କ ସିଦ୍ଧାନ୍ତ ଢେଙ୍କୁରା ପିଟି ଜଣାଇ ଦିଆଗଲା । କିନ୍ତୁ ସାତଦିନ ବିତିଯିବା ସତ୍ତ୍ୱେ କେହି କାହିଁ କାଉଙ୍କ ସଂଖ୍ୟା ଜଣାଇବାକୁ ଆସିଲେ ନାହିଁ ।

ସୁଧୀର ନାମକ ଯୁବକ ସଦ୍ୟ ରାଜଧାନୀକୁ ଆସିଥାଏ । ସେ ଆସି ସିଧା ରାଜଦରବାରରେ ପହଞ୍ଚିଗଲା ଓ କହିଲା, "ମହାରାଜ! ମୁଁ ଖାଲି କାଉଙ୍କ ସଂଖ୍ୟା କାହିଁକି, କାଉ, କୋଇଲି, ବଗ, ଘରଚଟିଆ, ଏହିପରି ସବୁ ପକ୍ଷୀଙ୍କ ସଂଖ୍ୟା କହିଦେବି । ଖାଲି ପେଚାଙ୍କ ସଂଖ୍ୟା କହିବା ମୋ ପକ୍ଷରେ ସମ୍ଭବପର ହେବ ନାହିଁ । କାରଣ ସେମାନେ ରାତର ପକ୍ଷୀ । ମୁଁ ଦିନ ସାରା ରାଜ୍ୟର ଭଲ ଭଲ ସ୍ଥାନରେ ବୁଲୁଥାଏଁ । ରାତର ହାଲଚାଲ ଜାଣେ ନାହିଁ ।"

ସେ ପର୍ଯ୍ୟନ୍ତ ରାଜା ମନ୍ତ୍ରୀଙ୍କ ଘୋଷଣା ବିଷୟ ଜାଣି ନଥିଲେ । ରାଜାଙ୍କ ଆଗରେ ଆସି ସିଧା ସେ ଏପରି କହିବାରୁ ମନ୍ତ୍ରୀ ରାଗିଗଲେ ଓ କହିଲେ, "ତମକୁ ବଗ, ଘରଚଟିଆଙ୍କ ହିସାବ କିଏ ମାଗୁଛି ? ଖାଲି କାଉଙ୍କ ସଂଖ୍ୟା ଆମ ରାଜ୍ୟରେ କେତେ ହେଲଣି, ସେତକ ଆମେ ଜାଣିବା ଦରକାର ବୋଲି ଢେଙ୍କୁରା ଦିଆ ଯାଇଥିଲା । ତମେ ଜାଣିଥିଲେ କୁହ । ଯଦି ଭୁଲ କହିବ, ତେବେ ଦଣ୍ଡ ପାଇବ ।"

"ମହାରାଜ, ଆପଣଙ୍କ ମନ୍ତ୍ରୀ ରାଗି ଯାଉଛନ୍ତି କାହିଁକି ମୁଁ ବୁଝିପାରୁ ନାହିଁ । ମୁଁ ତ ତାଙ୍କ ଘୋଷଣା ଅନୁସାରେ ତାଙ୍କୁ ସାହାଯ୍ୟ କରିବାକୁ ଆସିଛି !" ସୁଧୀର କହିଲା ।

ରାଜା ସୁଧୀରର ଏହି ଦୃଢ଼ ମନ୍ତବ୍ୟ ଶୁଣିବା ସଙ୍ଗେ ସଙ୍ଗେ ସୁଧୀର ସହିତ କଥାବାର୍ତ୍ତା କରିବାରେ ଟିକିଏ କୌତୁହଳୀ ହୋଇ ପଡ଼ିଲେ । ପୁଣି ମନ୍ତ୍ରୀ ଏପରି ଏକ ମୂଲ୍ୟହୀନ କଥାକୁ ନେଇ ଢେଙ୍କୁରା ପିଟିଛନ୍ତି ବୋଲି ଜାଣି ସେ ଭିତରେ ଟିକିଏ ବିରକ୍ତ ହେଲେ ମଧ୍ୟ ବାହାରକୁ ସେସବୁ ପ୍ରକାଶ କଲେ ନାହିଁ । ବରଂ ମନ୍ତ୍ରୀଙ୍କୁ ଏ ପ୍ରକାର ପରିସ୍ଥିତିରେ ରକ୍ଷା କରିବାକୁ ଯାଇ ସେ ପଚାରିଲେ, "ଆଚ୍ଛା ହେଉ ଏବେ କୁହ ଆମ ରାଜ୍ୟର କାଉଙ୍କ ସଂଖ୍ୟା କେତେ ?"

"ମହାରାଜ! ଏକଲକ୍ଷ ପାଞ୍ଚହଜାର ତିନିଶହ ସତେଇଶ। ଗତ କାଲି ସନ୍ଧ୍ୟା ସୁଦ୍ଧା କାଉ ସଂଖ୍ୟା ଏତିକି।" ସୁଧୀର କହିଲା।

"ଏତିକି ବୋଲି ପ୍ରମାଣ କ'ଣ?" ମଂତ୍ରୀ ଚଡ଼ି ଯାଇ ପଚାରିଲେ।

"ଏତିକି ନୁହେଁ ବୋଲି ପ୍ରମାଣ କ'ଣ? ଆପଣ ଗଣି ପାରନ୍ତି।" ସୁଧୀର ଧୀର କଣ୍ଠରେ କହିଲା। ବେଶ୍ ବେଶ୍। ମୁଁ ଆଜି ସବୁ ଗ୍ରାମର ମୁଖ୍ୟମାନଙ୍କ ପାଖକୁ ଖବର ଦେଉଛି। ସେମାନେ ନିଜ ନିଜ ଗ୍ରାମରେ ଥିବା କାଉଙ୍କ ହିସାବ ପଠାଇବେ। ତେଣିକି ଦେଖାଯିବ। ଯଦି ତମ ହିସାବ ସହ ଆମ ହିସାବ ନ ମିଳିବ, ତେବେ ପରିଣତି ତମ ପାଇଁ ଭଲ ହେବ ନାହିଁ। ମଂତ୍ରୀ କହିଲେ।

"ହିସାବ ତ କଦାପି ମିଳିବ ନାହିଁ!" ସୁଧୀର କହିଲା।

"କାହିଁକି ମିଳିବ ନାହିଁ? ତମେ ଯଦି ଠିକ୍ ହିସାବ କରିଛ ବୋଲି ଦାବୀ କରୁଛ, ତେବେ ନ ମିଳିବ କାହିଁକି?" ମନ୍ତ୍ରୀ ରୁଷ୍ଟ ଭାବରେ ପଚାରିଲେ।

"ନ ମିଳିବାର କାରଣ ସହଜ। କାଉ-ମାନେ ଆମ ରାଜ୍ୟ ଓ ପର ରାଜ୍ୟ ଭିତରେ ଯେଉଁ ସୀମା ସରହଦ୍ ଅଛି, ତାକୁ ସ୍ୱୀକାର କରନ୍ତି ନାହିଁ। ତେଣୁ ଆପଣ ଗଣିବା ଭିତରେ କେତେ ହଜାର କାଉ ବିନା ଅନୁମତିରେ ଅନ୍ୟ ରାଜ୍ୟକୁ ଉଡି ଯିବେଣି। ଅନ୍ୟ ରାଜ୍ୟରୁ ବି କେତେ କାଉ ଏ ରାଜ୍ୟ ଭିତରକୁ ଆସି ଯିବେଣି। ଆପଣ ଯଦି ତିନିଥର ହିସାବ



ନେବେ ଓ ସବୁଥର ହିସାବ ଏକା ହେବାର ଦେଖାଯିବ, ତେବେ ମୋ ହିସାବ ଭୁଲ ବୋଲି କହି ମୋତେ ଦଣ୍ଡ ଦେବେ ।" ସୁଧୀର କହିଲା ।

"ତେବେ କ'ଣ ହିସାବ କେବେ ଠିକ୍ ହୋଇ ପାରିବ ନାହିଁ? ଆମେ ଆମ ରାଜ୍ୟର ସବୁ କାଉଙ୍କ ପରରେ ଧଳା ରଙ୍ଗ ଦେଇଦେବା ।" ମନ୍ତ୍ରୀ କହିଲେ ।

"ବାଃ, ବାଃ, ଏହା ବଡ଼ ସୁଚିନ୍ତିତ ଉପାୟ । ତେବେ ଏପାଇଁ ବିପୁଳ ଧୈର୍ଯ୍ୟ ଓ ଅଧ୍ୟବସାୟ ଆବଶ୍ୟକ । ମୋ ସହ ଜିଦି କରି ଏ କାମ କରିବାକୁ ହେଲେ ରାଜ୍ୟର ସବୁ ପ୍ରଜାଙ୍କୁ ଏ କାମରେ ଲଗାଇବାକୁ ହେବ । ପୁଣି ଏପରି ଧଳାରଙ୍ଗ ପ୍ରସ୍ତୁତ କରିବାକୁ ହେବ, ଯାହା ବର୍ଷାରେ ଧୋଇ ଯିବ ନାହିଁ ।"

ସୁଧୀରର ଏ କଥାରେ ସଭାସଦ୍‌ମାନେ ବେଶ୍ ଆମୋଦ ଅନୁଭବ କରୁଥାନ୍ତି । ହଠାତ୍ ରାଜା କହିଲେ, "ଯୁବକ! ଏଭଳି ଯୁକ୍ତି ତର୍କ ଅସାର ।"

"ମହାରାଜ! ଆପଣ ଠିକ୍ କହୁଛନ୍ତି । କିନ୍ତୁ କାଉଙ୍କ ସଂଖ୍ୟା ନିରୂପଣ କରିବା ନିମନ୍ତେ ମନ୍ତ୍ରୀଙ୍କର ଯେଉଁ ଘୋଷଣା, ତାହା ମଧ୍ୟ ଅସାର । ରାଜ୍ୟରେ କେତେ ସମସ୍ୟା ଅଛି । ରାଜ୍ୟର ଉତ୍ତର ଅଞ୍ଚଳରେ ବର୍ତ୍ତମାନ ପାଣି ଅଭାବରୁ ଲୋକେ ଛଟପଟ ହେଉଛନ୍ତି । ମନ୍ତ୍ରୀ ସେକଥା ଆପଣଙ୍କ ଦୃଷ୍ଟିକୁ ଆଣିଛନ୍ତି କି? ସେ ଦିଗରେ କୌଣସି ପ୍ରତିକାର କରୁଛନ୍ତି କି? ନା । କାଉଙ୍କ ସଂଖ୍ୟା କେତେ ତାହା ନିରୂପଣ କରିବା ଦିଗରେ ଡେଙ୍ଗୁରା ପିଟା ଚାଲିଛି ।" ସୁଧୀର କହିଲା ।

ସମସ୍ତେ ନୀରବ ରହିଲେ । କିଛି ସମୟ ପରେ ରାଜା କହିଲେ, "ଯୁବକ! ତମ ମନ୍ତବ୍ୟ ସହ ମୁଁ ଏକମତ ।"

ମନ୍ତ୍ରୀ ମୁଣ୍ଡ ତଳକୁ କଲେ । ରାଜା ସୁଧୀରକୁ ତାଙ୍କ ପରାମର୍ଶଦାତା ରୂପେ ନିଯୁକ୍ତ ଦେଲେ । କାଳକ୍ରମେ ସୁଧୀର ତାଙ୍କର ମନ୍ତ୍ରୀ ହେଲା ଓ ରାଜ୍ୟର ବହୁତ ହିତ ସାଧନ କଲା ।



# ଧୂସର ଦୁର୍ଗ



[ ୮ ]

[ଅଦ୍ଭୁତ ଯାଦୁଶକ୍ତିର ଅଧିକାରିଣୀ କାପାଳିନୀ ଚନ୍ଦ୍ରବର୍ମାଙ୍କୁ ଅଭ୍ୟର୍ଥନା କରି ତାପରେ ତାନ୍ତ୍ରିକ ଶଂଖୁ ପାଖକୁ ଯାଇ ତା'ର ଯାଦୁ ଶଂଖଟି ହସ୍ତଗତ କରିବାକୁ ଅନୁରୋଧ କଲା । ସେ ଶଂଖ ଭିତରେ କେତେକ ବିଶେଷ ଜଡ଼ିବୁଟି ରଖି ଓ ପାଣି ପୁରାଇ ସେ ପାଣି ପିଇଲେ ଜଣେ ବହୁ ବର୍ଷ ପର୍ଯ୍ୟନ୍ତ ଯୌବନ ବଜାୟ ରଖି ବଞ୍ଚି ପାରିବ । ଚନ୍ଦ୍ରବର୍ମା ପ୍ରଥମେ ଦ୍ୱିଧା କରି ତା'ପରେ ଶଂଖର ସନ୍ଧାନରେ ଚାଲିଲେ । ତା'ପରେ—]

କାଳନାଗ ଆଗେ ଆଗେ ବାଟ କଢ଼ାଇ ଚାଲିଥାଏ । ଚନ୍ଦ୍ରବର୍ମା ତାକୁ ଅନୁସରଣ କରୁଥାନ୍ତି । ସାପ ମଧ୍ୟେ ମଧ୍ୟେ ଏଣେ ତେଣେ ତା'ର ଭୀଷଣ ଦୃଷ୍ଟି ନିକ୍ଷେପ କରୁଥାଏ ଏବଂ ଜୋରେ ଜୋରେ ନିଃଶ୍ୱାସ ଛାଡୁଥାଏ । ସେ ଘନ ଅରଣ୍ୟ ଭିତରେ ଚନ୍ଦ୍ରବର୍ମାଙ୍କୁ ନିଜ ଶୀକାର ବନାଇବା ନିମନ୍ତେ ଯେଉଁ ସବୁ ପଶୁ ମାଡି ଆସୁଥାନ୍ତି, ସେମାନେ କାଳ ନାଗର ତେଜ ଦେଖି ଇତସ୍ତତଃ ପଳାୟନ କରୁଥାନ୍ତି ।

କିଛି ଦୂର ଯିବା ପରେ ହଠାତ୍ ଚନ୍ଦ୍ରବର୍ମା ମନକୁ ଗୋଟାଏ ଭାବନା ଆସିଲା । କାପାଳିନୀ ତ କାଳନାଗ ସହ ଏପରି ଭାବରେ କଥାବାର୍ତ୍ତା କରୁଥିଲା ସତେ ଅବା କାଳନାଗ ଗୋଟାଏ ମଣିଷ । କାଳନାଗ ତେବେ ମଣିଷର ଭାଷା




ବୁଝିପାରେ । କିନ୍ତୁ ସେ ମଣିଷ ଭଳି କଥା କହିପାରେ କି ? ପରୀକ୍ଷା କରି ଦେଖିବା ପାଇଁ ତାଙ୍କ ମନରେ କୌତୂହଳ ହେଲା ।

ସେ କାଳନାଗ ଆଗକୁ ଯାଇ କହିଲେ, "କାଳନାଗ, ଏ ଜଙ୍ଗଲ ଭିତର ଦେଇ ତମେ ଯେ ମୋତେ ବାଟ ଦେଖାଇ ନେଇ ଚାଲିଛ, ଏହା ମୋ ପାଇଁ କମ୍ ଆନନ୍ଦର କଥା ନୁହେଁ । ତୁମ ସହାୟତା ବିନା ଏତେ ବେଳକୁ ମୁଁ ବଞ୍ଚି ଥାଆନ୍ତି କି ନା ସନ୍ଦେହ । ଆଚ୍ଛା, କହିଲ, ଆଉ କେତେ ବାଟ ଏମିତି ଯିବାକୁ ପଡ଼ିବ ?"

ଚନ୍ଦ୍ରବର୍ମାଙ୍କ ପ୍ରଶ୍ନ ଶୁଣି କାଳନାଗ ନିଜ ଗତି ରୋକିଲା । ସେ ତା'ର ବିଶାଳ ଫଣା ଓ ତିନି ମୁଣ୍ଡ ତୋଳି ଗୋଟାଏ ବିଚିତ୍ର ଧ୍ୱନି କଲା ।

ସେ ଧ୍ୱନି ସାପର ସ୍ୱାଭାବିକ ଫୁତ୍କାର ନୁହେଁ ; ସେଥିରେ ଅନ୍ୟର ଭୟ ଉଦ୍ରେକ ହେଲା ଭଳି କିଛି ନଥିଲା ।

ଚନ୍ଦ୍ରବର୍ମାଙ୍କ ମୁହଁରେ ସାପର ଦୃଷ୍ଟି ନିବଦ୍ଧ ହେଲା । ସାପ ସେହିଭଳି ମୃଦୁ ଶବ୍ଦ କରି ଫଣା ଏଣେ ତେଣେ ବୁଲାଉଥାଏ । ତା'ପରେ ସେ ଧିରେ ଧିରେ ବାଟ ବଦଳାଇ ଅନ୍ୟ ଦିଗରେ ଅଗ୍ରସର ହେଲା ଓ ପଛକୁ ବୁଲି ଚନ୍ଦ୍ରବର୍ମାଙ୍କ ଆଡ଼େ ଅନାଇଲା । ଚନ୍ଦ୍ରବର୍ମା ବୁଝିଲେ ଯେ ସେ ତାଙ୍କୁ ଅନୁସରଣ କରିବାକୁ ନିର୍ଦ୍ଦେଶ ଦେଉଛି । ହୁଏତ ତାଙ୍କୁ ସେ କିଛି ରହସ୍ୟ ବତାଇବ । ସେ କୌଣସି ସଙ୍କୋଚ ନକରି କାଳନାଗକୁ ଅନୁସରଣ କଲେ । ଜଙ୍ଗଲର ଗହନ ଅନ୍ଧାରୁଆ ଅଂଶ ଅତିକ୍ରମ କରି ସେମାନେ ଗୋଟାଏ ଝରଣା ପାଖରେ ଯାଇ ପହଞ୍ଚିଲେ ।

କାଳନାଗ ଝରଣା ପାଖରେ ରୋକିଯାଇ ଫଣା ତୋଳି ଝରଣାର ଅନ୍ୟ ପାଖରେ ଥିବା ଗୋଟାଏ ବିଚିତ୍ର ବୃକ୍ଷ ଆଡ଼େ ଦୃଷ୍ଟିପାତ କଲା । ଚନ୍ଦ୍ରବର୍ମା ତା' ଦୃଷ୍ଟି ଅନୁସରଣ କରି ସେ ବୃକ୍ଷ ଆଡ଼େ ଅନାଇଲେ । ସେ ବୃକ୍ଷ ଗହନରୁ ଭୟଙ୍କର ଅଟ୍ଟହାସ୍ୟ ଭାସି ଆସିଲା । ଚନ୍ଦ୍ରବର୍ମା ଚମକି ପଡ଼ିଲେ । ସେ ଭଲ କରି ଉପରକୁ ଅନାଇ ଯାହା ଦେଖିଲେ, ସେଥିରେ ସେ ଥରି ଉଠିଲେ ।

ଚାଳିଶ ପଚାଶ ଫୁଟ ଉଚ୍ଚ ସେ ଗଛର ପତ୍ର ଗହଳରେ ଅନେକ ପଶୁ ଓ ପକ୍ଷୀଙ୍କ ମୁଣ୍ଡ

ଅଟକି ରହିଥିଲା । କାଳନାଗ ଓ ଚନ୍ଦ୍ରବର୍ମାଙ୍କୁ ଦେଖି ସେ ମୁଣ୍ଡମାନେ ପାଟି କରିବାକୁ ଆରମ୍ଭ କରିଥିଲେ ।

ଚନ୍ଦ୍ରବର୍ମା କାଳନାଗ ଆଡ଼େ ଆଖି ଫେରାଇ ଦେଖିଲେ, ସେ ଗଛ ଆଡ଼େ ନିର୍ନିମେଷ ନୟନରେ ଚାହିଁ ରହିଛି । ଚନ୍ଦ୍ରବର୍ମା ପଚାରିଲେ, "କାଳନାଗ, ଏହା ଗୋଟାଏ ଗଛ ନା ଗଛ ରୂପରେ ଥିବା କୌଣସି ଭୀଷଣ ରାକ୍ଷସ ?"

କାଳନାଗ ଏ ପ୍ରଶ୍ନର କୌଣସି ଉତ୍ତର ନଦେଇ ମୁଣ୍ଡ ହଲାଇ ଝରଣା ଆଡ଼େ ଅଗ୍ରସର ହେଲା । ଚନ୍ଦ୍ରବର୍ମା ତା' ପଛେ ପଛେ ଚାଲିଲେ । କାଳନାଗ ଗୋଟାଏ ଲଂଫ ଦେଇ ଝରଣା ଟପି ଗଲା ଓ ସେ ବିରାଟ ବୃକ୍ଷ ପାଖରେ ରହିଗଲା । ଚନ୍ଦ୍ରବର୍ମା ବି ଯାଇ ସେ ବୃକ୍ଷ ପାଖରେ ପହଞ୍ଚିଲେ । ସଙ୍ଗେ ସଙ୍ଗେ ସେ ଚିତ୍କାର ଆହୁରି ତୀବ୍ର ହେଲା । କାନର ପର୍ଦ୍ଦା ଯେପରି ଫାଟି ଯିବ ! ଚନ୍ଦ୍ରବର୍ମା ଦମ୍ଭ ଧରି ଠିଆ ହୋଇ ରହିଲେ । ଭାବିଲେ, କାଳନାଗ ଯଦି ଇଚ୍ଛା କରି ତାଙ୍କୁ ବିପଦରେ ପକାଇବ, ସେ ବା କ'ଣ କରି ପାରିବେ ? ବଣରେ ପଶିବା ମୁହୂର୍ତ୍ତରୁହିଁ ସେ କାପାଳିନୀର ଶକ୍ତି ଦ୍ୱାରା କାବୁ ହୋଇ ରହିଛନ୍ତି । ତାଙ୍କ ଦୈହିକ ବଳ ବା ତାଙ୍କ ତରବାରି ଏସବୁ ପରିସ୍ଥିତିରେ କିଛି କାମ ଦେଇ ପାରିବ ନାହିଁ । ତାଙ୍କର ହିତ ହେଉ ବା ଅହିତ ହେଉ, ଯାହା ହେବ ତାହା କାପାଳିନୀର ଇଚ୍ଛାରେହିଁ ହେବ ।



ଚନ୍ଦ୍ରବର୍ମା ଏହି ଚିନ୍ତାରେ ନିବିଷ୍ଟ ଥିବା ବେଳେ କାଳନାଗ ତାଙ୍କ ପାଖକୁ ଚାଲି ଆସିଲା ଓ ଫଣା ଉଠାଇ ବୃକ୍ଷ ଆଡ଼େ ସଙ୍କେତ କଲା ।

ଚନ୍ଦ୍ରବର୍ମା ବୁଝି ପାରିଲେ କି କାଳନାଗ ତାଙ୍କୁ ସେ ଗଛ ଚଢ଼ିବାକୁ କହୁଛି । ଚନ୍ଦ୍ରବର୍ମା ନିଜ ତରବାରି କୋଷମୁକ୍ତ କରି ଗଛ ପାଖକୁ ଗଲେ ଓ ଗଛରେ ଆଘାତ କଲେ । ସଙ୍ଗେ ସଙ୍ଗେ ସାରା ବଣ ଭୀଷଣ ଶବ୍ଦରେ କମ୍ପି ଉଠିଲା । କାଳନାଗ ବି ଯେପରିକି ଡରିଗଲା । ସେ ଚନ୍ଦ୍ରବର୍ମାଙ୍କ ପାଖକୁ ଲାଗି ଆସିଲା ।

ଚନ୍ଦ୍ରବର୍ମା ସେତେବେଳେ ଭାବୁଥିଲେ, ଗଛ ଉପରେ ଝୁଲୁଥିବା ସେସବୁ ପଶୁପକ୍ଷୀଙ୍କ




ମୁଣ୍ଡଟିମାନ ତରବାରି ସାହାଯ୍ୟରେ କାଟି ତଳକୁ ପକାଇ ଦେଇ ହେବ କି ନାହିଁ ।

କାଳନାଗ ବୃକ୍ଷ ପାଖକୁ ଯାଇ ତା' ଦେହରେ ଲପଟିଗଲା ଓ ବୃକ୍ଷ ଶାଖା ଆଡ଼େ ଦୃଷ୍ଟିପାତ କଲା । ଚନ୍ଦ୍ରବର୍ମା ସେଥିରୁ ଯାହା ବୁଝିଲେ, ସେହି ଅନୁସାରେ ତରତରରେ ଗଛ ଉପରକୁ ଉଠିଗଲେ ।

ଗଛରେ ଅଟକିଥିବା ମୁଣ୍ଡମାନଙ୍କ ଚିତ୍କାର ତୀବ୍ରତର ହେଲା । ଚନ୍ଦ୍ରବର୍ମା ନିର୍ଭୟରେ ଗୋଟିଏ ବାଘ ମୁଣ୍ଡ ପାଖରେ ପହଞ୍ଚି ଡାଳ ସହ ତାକୁ କାଟି ତଳକୁ ପକାଇ ଦେଲେ । ଭୀଷଣ ଶବ୍ଦ କରି ଡାଳ ଓ ମୁଣ୍ଡ ତଳେ ପଡ଼ିଲେ । ଚନ୍ଦ୍ରବର୍ମା ତଳକୁ ଅନାଇ ଦେଖିଲେ, ତାଙ୍କ ଆଖି ଆଗରେ ସେ ବାଘ ମୁଣ୍ଡ ଗୋଟିଏ ଫଳରେ ପରିଣତ ହେଲା ! ତାଙ୍କ ବିସ୍ମୟର ସୀମା ରହିଲା ନାହିଁ ।

ଚନ୍ଦ୍ରବର୍ମା ଗଛରୁ ଓହ୍ଲାଇ ଆସିଲେ । ତଳକୁ ଆସି ସେ ଦେଖିଲେ ଫଳଟିକୁ ସାପ ତା' ନିଜ ମୁହଁରେ ଧରି ତାଙ୍କୁ ଯାଚୁଛି । ଚନ୍ଦ୍ରବର୍ମା ତାହା ଗ୍ରହଣ କଲେ ଓ ଚାଖିଲେ । ସଙ୍ଗେ ସଙ୍ଗେ କାଳନାଗ ହସିଲା ଓ କହିଲା, "ଚନ୍ଦ୍ରବର୍ମା ! ଗଛରେ ଝୁଲୁଥିବା ବିଚିତ୍ର ମୁଣ୍ଡର କରାମତି ଦେଖିଲଟି ?"

ଚନ୍ଦ୍ରବର୍ମା ବୁଝିଲେ, ସେ ବିଚିତ୍ର ଫଳରେ ସେ ଦାନ୍ତ ବସାଇବା ଦ୍ୱାରା କାଳନାଗର ବକ୍ତବ୍ୟ ବୁଝି ପାରୁଛନ୍ତି । ଅର୍ଥାତ୍ କାଳନାଗ ଯେଉଁ ଶବ୍ଦ କରୁଛି, ତାହା ତାଙ୍କ କାନରେ ମଣିଷର ଭାଷା ରୂପେ ପହଞ୍ଚୁଛି ।

"ଚନ୍ଦ୍ରବର୍ମା ! ଏ ଫଳ ଚାଖିବା ପରେ ତମେ ପଶୁପକ୍ଷୀଙ୍କ ଭାଷା ସହଜରେ ବୁଝି-ପାରିବ । ତାଂତ୍ରିକ ଶଂଖ ପାଖରେ ପହଞ୍ଚିବା ସକାଶେ ତଥା ତା'ର ଶଂଖ ହସ୍ତଗତ କରିବା ସକାଶେ ଏ ବିଦ୍ୟା ତମର ବହୁତ କାମରେ ଆସିବ । କିନ୍ତୁ ଗୋଟିଏ କଥା ମନେ ରଖ । ସେ ତାଂତ୍ରିକର ସେବକ ଅଗ୍ନିପକ୍ଷୀ ପ୍ରତି ସାବଧାନ ! ସେ ବଡ଼ ଭୟଙ୍କର ପକ୍ଷୀ । ତମେ ତମ ନିଜ ସାହସ ଓ ଚେଷ୍ଟା ବଳରେ ବିଜୟ ଲାଭ କରିବ, ମୋର ଏ ବିଶ୍ୱାସ ଅଛି ।" କାଳନାଗ କହିଲା ।

ଚନ୍ଦ୍ରବର୍ମା ଉତ୍ସାହିତ ହେଲେ । ସେ କାଳନାଗ ଆଡ଼େ କୃତଜ୍ଞ ଭରେ ଅନାଇ କହିଲେ, "କାଳନାଗ ! ତମେ ମୋର ବହୁତ ଉପକାର କଲ । ଏହା ବଦଳରେ ମୁଁ ତୁମର କ'ଣ କରିପାରେଁ ?"

କାଳନାଗ ମୁଣ୍ଡ ତଳକୁ କରି କହିଲା, "ଯୁବରାଜ ! ମୋର ଗୋଟାଏ ଉପକାର କରି ପାରିବ ? ତମେ ତାଂତ୍ରିକ ଶଂଖୁ ପାଖରୁ ଶଂଖ ଧରି ଆସିବା ପର୍ଯ୍ୟନ୍ତ ମୁଁ ତମ ଅପେକ୍ଷାରେ ରହିବି ।"




ଚନ୍ଦ୍ରବର୍ମା ଏହା ଶୁଣି କାଳନାଗ ତାଙ୍କଠାରୁ କି ପ୍ରକାର ସହାୟତା ଚାହୁଁଛି, ତାହା ଜାଣିବାକୁ ଆଗ୍ରହାନ୍ୱିତ ହେଲେ । ସେ କାଳନାଗ ଆଡ଼େ ସଂଶୟାକୁଳ ଭାବରେ ଅନାଇ ପଚାରିଲେ, "ଆଚ୍ଛା କାଳନାଗ, ତମ୍ଭେ ବାସ୍ତବରେ ମନୁଷ୍ୟ ନା ସାପ ? ମୋତେ ସତ ସତ କହିଦିଅ ।"

କାଳନାଗ ଧୀରେ ଧୀରେ କହିଲା, "ଦିନ ଥିଲା ଯେତେବେଳେ ମୁଁ ମଣିଷ ଥିଲି । ତାଂତ୍ରିକ ଶଂଖୁର ଶିଷ୍ୟ ଥିଲି । ଶଂଖୁର ଆଦେଶ ପାଇ କାପାଳନୀର ଅନିଷ୍ଟ କରିବାକୁ ବାହାରି ଦୁର୍ଭାଗ୍ୟବଶତଃ ଅସଫଳ ହେଲି । ତାହାରି ପରିଣାମରେ ମୋର ଏ ଦୁର୍ଦ୍ଦଶା । କାପାଳନୀ ମୋତେ ସର୍ପ ବନାଇ ଛାଡ଼ିଛି । ସେ ମୋ ଦ୍ୱାରା ଯାହା କରାଇବାର କରାଇ ନେଉଛି, କିନ୍ତୁ ମୋ ଉପରେ ତା'ର ବିଶ୍ୱାସ ନାହିଁ । ସବୁବେଳେ ସେ ମୋତେ ସନ୍ଦେହ କରୁଥାଏ । ତେବେ ମୁଁ ମୋ ଭବିଷ୍ୟତ ଉପରେ ପୁରାପୁରି ଆସ୍ଥା ହରାଇ ନାହିଁ । ତମ୍ଭେ ତମ କାମରେ ସଫଳ ହୋଇ ଫେରିଲେ ମୋତେ ଉଦ୍ଧାର କରିବ ବୋଲି ମୋର ବିଶ୍ୱାସ ।"

"ତମେ ସେଥିପାଇଁ ଦୀର୍ଘ କାଳ ଧରି ଏଠାରେ ଅପେକ୍ଷା କରିବା ଦରକାର ନାହିଁ । ମୁଁ ବର୍ତ୍ତମାନ ଫେରିଯାଇ କାପାଳନୀକୁ ଅନୁରୋଧ କରିବି କି ସେ ତୁମର ମନୁଷ୍ୟ ରୂପ ଫେରାଇ ଦେଉ । ସେ ମୋ ଅନୁରୋଧ ରକ୍ଷା କରିବ ବୋଲି ଆଶା ।" ଚନ୍ଦ୍ରବର୍ମା କହିଲେ ।



ସନ୍ଦେହ ଉପୁଯାଇବା ଆମ ପକ୍ଷରେ ହିତକର ହେବ ନାହିଁ । ଆମେ ତ କାମ କରିସାରିବା ପରେ ସେ ଆମର ଉପକାର କରିବ ବୋଲି ଆମେ ଆଶା କରିବା । କିନ୍ତୁ ଆମକୁ ବଡ଼ ସାବଧାନରେ ରହିବାକୁ ହେବ । କାରଣ ଥରେ କାମ ହାସଲ୍ ହେବା ପରେ ସେ ଆମ ପ୍ରତି ନିର୍ଦ୍ଦୟ ହେବା ଅସମ୍ଭବ ନୁହେଁ । ତେବେ ବର୍ତ୍ତମାନ ପରିସ୍ଥିତିରେ ଆମେ ତା'ର ସାହାଯ୍ୟ ଲୋଡ଼ିବା ଛଡ଼ା ଅନ୍ୟ ଉପାୟ ନାହିଁ । ମୁଁ ପୁଣି ଥରେ କହି ଦେଉଛି, ତୁମେ ଖୁବ୍ ସତର୍କ ହୋଇ କାମ କରୁଥିବ ।"

କାଳନାଗର ସତର୍କ ବାଣୀର ଯଥାର୍ଥ୍ୟ ଚନ୍ଦ୍ରବର୍ମା ବୁଝିପାରିଲେ । ତାଂନ୍ତ୍ରିକ ଓ ଯାଦୁକରମାନଙ୍କୁ ସହଜରେ ବିଶ୍ୱାସ କରାଯାଇ ପାରେନା । କେତେବେଳେ ସେମାନେ କୁଟିଳ ଉଦ୍ଦେଶ୍ୟ ସାଧନ ପାଇଁ କ'ଣ କରି ବସିବେ, ସେକଥା କହି ହେବନାହିଁ ।

କାଳନାଗ ଓ ଚନ୍ଦ୍ରବର୍ମା ପୁଣି ବଣ ଭିତରୁ ବାହାରକୁ ଯିବା ରାସ୍ତା ଧରିଲେ । କାଳନାଗ ଆଗେ ଆଗେ ଚାଲିଲା । ଚାଲିବା ସମୟରେ କାଳନାଗ ଓ ଚନ୍ଦ୍ରବର୍ମା ଯାଦୁ ବିଷୟରେ ଅନେକ କଥାବାର୍ତ୍ତା ହେଲେ । ଏବେ କଥାବାର୍ତ୍ତା ହେବାରେ ଓ ବୁଝିବାରେ କୌଣସି ବାଧା ନ ଥିଲା । ରାସ୍ତା ଅତି ଦୀର୍ଘ ଥିଲା । ତେଣୁ କଥାବାର୍ତ୍ତା କରିବା ଦ୍ୱାରା

କିନ୍ତୁ କାଳନାଗ ସେ ପ୍ରସ୍ତାବରେ ଉତ୍ସାହ ଦେଖାଇଲା ନାହିଁ । ସେ କହିଲା, "ଯୁବରାଜ ! ତରତର ହୋଇ କିଛି କରିବା ଠିକ ନୁହେଁ । ସବୁ କାମ ବୁଝି ସମଝି କରିବା ଉଚିତ । ନହେଲେ ପରେ ପସ୍ତାଇବାକୁ ହେବ । ତମେ କାପାଳିନୀର ସ୍ୱଭାବ ଭଲ କରି ଜାଣ ନା । ସେ ବଡ଼ ସନ୍ଦେହୀ । ଆମେ ଦୁହେଁ ମିଳି ତା'ର ଅନିଷ୍ଟ କରିବାକୁ ଉଦ୍ୟମ କରୁଛୁଁ ବୋଲି ସେ ଭାବିପାରେ । ଫଳରେ ମୋର ଲାଭ ତ ହେବ ନାହିଁ, ତମର ବି ଅନିଷ୍ଟ ହେବ । କେତେ ଦିନରୁ ତ ସାପ ହୋଇ ରହିଲଣି । ଆଉ କେତେଦିନ ରହିଲେ କ୍ଷତି କ'ଣ ? କାପାଳିନୀ ମନରେ ଭଲେ ବି

ଚାଲିବାର ଶ୍ରମ ଟିକିଏ କମ୍ ଜଣା ଯାଉଥିଲା । ବହୁ ସମୟ ଧରି ତଂହମଂହ ବିଷୟରେ କଥାବାର୍ତ୍ତା ହେବା ପରେ କାଳନାଗର ନାନା ଅନୁଭୂତି ମଧ୍ୟରୁ ଚନ୍ଦ୍ରବର୍ମା ବହୁତ ଉପାଦାନ ପାଇଲେ ଯାହା ତାଙ୍କୁ ଭବିଷ୍ୟତରେ ସାହାଯ୍ୟ କରିବ । ସେ କାଳନାଗକୁ ନିଜର କୃତଜ୍ଞତା ଜଣାଇଲେ । କାଳନାଗର ସମସ୍ତ କଥାକୁ ସେ ମନେ ରଖିଥା'ନ୍ତି । ଏହି ଜଗତ ବିଷୟରେ ଏବେ ତାଙ୍କର ସମ୍ୟକ ଧାରଣା ହୋଇଗଲା ।

ସେମାନେ ଘନ ଜଙ୍ଗଲ ପାରି ହେବା ବେଳକୁ ବେଳ ଦୁଇ ପହର ହେଲାଣି । ଆଗରେ ବଡ ବଡ଼ ପାହାଡ଼ ଓ ଘାଟି ଦୃଷ୍ଟିଗୋଚର ହେଲା । ସେ ମୂଳକରେ ଜଙ୍ଗଲ ପତଳା ।

କାଳନାଗ ରହିଗଲା ଓ କହିଲା, "ଯୁବରାଜ! ଏଥର ମୋତେ ବିଦାୟ ନେବାକୁ ହେବ । ଆଉ ଦୂରକୁ ଏ ପାହାଡ଼ ଉପରେ ଘୋଷାରି ହୋଇ ଯିବା ମୋ ପକ୍ଷରେ ସମ୍ଭବପର ନୁହେଁ । ତମେ ପଶୁପକ୍ଷୀଙ୍କ ଭାଷା ବୁଝି ପାରୁଛ । ତମ ପାଇଁ ଆଉ ବିଶେଷ ଅସୁବିଧା ହେବ ନାହିଁ । ତୁମେ ସାହସୀ । ଖାଲି ସତର୍କ ହୋଇ କାମ କଲେ ହେଲା । ମୋର ବିଶ୍ୱାସ ତୁମର ବିଜୟ ନିଶ୍ଚିତ ।"

କାଳନାଗ ଚନ୍ଦ୍ରବର୍ମାଠୁଁ ବିଦାୟ ନେଇ ଫୁଙ୍କାର କରି ପଛକୁ ଫେରିଲା । ସେ ଅଦୃଶ୍ୟ



ହେବା ଯାଏ ଚନ୍ଦ୍ରବର୍ମା ସେ ବିଚିତ୍ର ଜୀବ ଆଡ଼େ ଅନାଇ ରହିଲେ । ତା'ପରେ ଏକାକୀ ଆଗକୁ ଚାଲିଲେ ।

ଚନ୍ଦ୍ରବର୍ମା ଦେଖିଲେ ସେ ଅଞ୍ଚଳରେ ଗହଳ ଗଛଲତା ନଥିଲେ ବି ଯେତକ ଗଛ ଅଛି, ସେସବୁ ବିଶାଳ ଓ ଉଚ୍ଚ । ବର୍ତ୍ତମାନ ସେ ଯେଉଁ ସବୁ ପଶୁପକ୍ଷୀଙ୍କ ଧ୍ୱନି ଶୁଣୁଥିଲେ, ସେସବୁର ଅର୍ଥ ମଧ୍ୟ ବୁଝିପାରୁଥିଲେ । ସେଥିରେ ସେ ବେଶ୍ କୌତୁହଳ ଅନୁଭବ କରୁଥିଲେ ।

ଗୋଟିଏ ପକ୍ଷୀ ଅନ୍ୟ ପକ୍ଷୀକୁ କହୁଥିଲା : ସାବଧାନ ରହ । ଗୋଟାଏ ନୂଆ ପ୍ରାଣୀ ଏ ଆଡ଼କୁ ଧସେଇ ଆସୁଛି !

ବେଳ ତିନିପହର ହେବା ବେଳକୁ ଚନ୍ଦ୍ର-ବର୍ମାଙ୍କୁ ବହୁତ ହାଲିଆ ଲାଗିଲା । ସେ ଏଣେ ତେଣେ ଅନାଇଲେ । କିନ୍ତୁ କୌଣସି ଖାଦ୍ୟ ହେଲାଭଳି ଫଳମୂଳ ଦେଖିଲେ ନାହିଁ । ଚାରିଆଡ଼େ ଖାଲି କଣ୍ଟାବୁଦା ଓ ବଡ଼ ବଡ଼ ଗଛ ।

ଚନ୍ଦ୍ରବର୍ମା ଭାବିଲେ : ଏଠି ପଡ଼ି ରହି ଲାଭ ନାହିଁ । ଅପଥାରେ ସନ୍ଧ୍ୟା ହେବ । ଦିନର ଆଲୁଅ ଥାଉଁ ଥାଉଁ କୌଣସି ଫଳମୂଳର ସନ୍ଧାନ କରିବା ଆବଶ୍ୟକ । ସେ ଉଠି ପଡ଼ି ପୁଣି ଆଗକୁ ବଢ଼ିଲେ ।

ଅଳ୍ପ ଦୂରରେ ଦେଖିଲେ ଗୋଟାଏ ଫଳ ଭରା ଗଛ । ସେ ପାଖକୁ ଯାଇଛନ୍ତି, ତାଙ୍କ ଆଖିରେ ପଡ଼ିଲା ଗୋଟିଏ ବିଚିତ୍ର ଦୃଶ୍ୟ । ଗଛ ପାଖଦେଇ ବୋହି ଯାଇଛି ଗୋଟିଏ ନଦୀ । କିନ୍ତୁ ସେ ନଦୀରୁ ନିଆଁ ବାହାରୁଛି । ପାଖରେ ଥିବା କୌଣସି ଆଗ୍ନେୟ ଗିରି ଭିତରୁ ସେ ନଦୀ ନିର୍ଗତ ହେଉଛି ଏବଂ ଭୂଗର୍ଭର ଉତ୍ତପ୍ତ ଦ୍ରବ୍ୟ ସେ ନଦୀ ଜଳରେ ମିଶି ରହିଛି ବୋଲି ସେ ବୁଝିଲେ । ତାଙ୍କୁ ସେ ନଦୀ ପାର ହେବାକୁ ହେବ । କିପରି ତାହା ସମ୍ଭବ ହେବ, ସେ ବୁଝିପାରୁ ନଥିଲେ । ସେତିକି ବେଳେ ଗୋଟାଏ ଅପ୍ରତ୍ୟାଶିତ ଘଟଣା ଘଟିଲା । ଗୋଟିଏ ପାର୍ବତ୍ୟ ଗର୍ତ୍ତ ଭିତରୁ ବାହାରି ଆସିଲା ଭୀଷଣ ଲମ୍ବ ସାପଟିଏ । ସେ ନଦୀର ଏକ ପ୍ରାନ୍ତରୁ ବଢ଼ି ଯାଇ ଅନ୍ୟ ପ୍ରାନ୍ତରେ ତା' ଫଣା ରଖିଲା । ଚଟାପଟ ଦୁଇ ତିନୋଟି ମାଙ୍କଡ଼ ସେ ସାପ ଉପର ଦେଇ ଅନ୍ୟ ତୀରକୁ ଚାଲିଯିବାର ଚନ୍ଦ୍ରବର୍ମା ଦେଖିଲେ । ସେ ଭାବିଲେ ତାହାହିଁ ତାଙ୍କ ପାଇଁ ସୁବର୍ଣ୍ଣ ସୁଯୋଗ । ମାଙ୍କଡ଼ଙ୍କ ପଦାଙ୍କ ଅନୁସରଣ କରି ସେ ବି ସାପ ଉପର ଦେଇ କ୍ଷିପ୍ର ଗତିରେ ଚାଲିବାକୁ ଲାଗିଲେ । ସାପ ତା' ଲାଞ୍ଜ ଅଂଶ ଗୋଟାଇ ନେବା ପୂର୍ବରୁ ସେ ପାଖରେ ନ ପହଞ୍ଚିଲେ ସର୍ବନାଶ !

(କ୍ରମଶଃ)






# ନ୍ୟାୟ ଅନ୍ୟାୟ

ନିଶା ଗରଜୁଥାଏ । ଝୁହାକୁ ଝୁହା ଶୀତଳ ପବନ ସାଥିକୁ ବର୍ଷା ହେଉଥାଏ । ବଜ୍ରପାତଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ଼ ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ତାକୁ କାନ୍ଧରେ ପକାଇ ସେ ଶୁନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ତମଠାରୁ କାମ ହାସଲ୍ କରିନେଇ ତମକୁ ଜବଦ କରିବା ମତଲବ୍‌ରେ କେହି ନାହିଁ ତ? ସେଭଳି ଲୋକଙ୍କ ଚକ୍ରାନ୍ତ ପ୍ରତି ତମେ

## ବେତାଳ କଥା



ଦୂଷିଆର୍ ରହିବା ସୁଦ୍ଧ । ସେଭଳି ଲୋକଙ୍କ ବ୍ୟବହାର ସମ୍ପର୍କରେ ତମକୁ ଗୋଟାଏ ଦୃଷ୍ଟାନ୍ତ ଦେଉଛି, ମନ ଦେଇ ଶୁଣ । ଶୁଣିଲେ ଶ୍ରମର ଲାଘବ ମନେ ହେବ ।"

ବେତାଳ କହିଲା: ବିଦ୍ୟାପୁର ଦେଶରେ ଆସି ସଦ୍ୟ ପହଞ୍ଚିଥାଏ ତାନ୍ତ୍ରିକ ଶରଭ । ବିଦ୍ୟାପୁର ଆସିବା ପୂର୍ବରୁ ସେ ପଡ଼ୋଶୀ ରାଜ୍ୟରେ ଆତଙ୍କ ସୃଷ୍ଟି କରିଥାଏ । ତା' ତନ୍ତ୍ରଶକ୍ତି ବଳରେ ସେ ଯେ କୌଣସି ଲୋକକୁ ଆଖି ପଲକରେ ମାରିଦେଇ ପାରୁଥିଲା; କୌଣସି ଗାଁର ଲୋକଙ୍କ ଉପରେ ରାଗିଗଲେ ସେ ସାରା ଗାଁକୁ ଜାଳି ପୋଡ଼ିଦେଇ ପାରୁଥିଲା । ଏହିପରି ନାନା କାମ କରି ସେ ଆସି ବିଦ୍ୟାପୁରରେ ପହଞ୍ଚି ରାଜ୍ୟ ସୀମାନ୍ତବର୍ତ୍ତୀ ଗୋଟିଏ ବରଗଛ ମୂଳରେ ବସିଥିଲା । ଦୁଇପହର ବେଳେ ସେ କିଛି ତାନ୍ତ୍ରିକ ପୂଜା କରେ । ପୂଜା ଶେଷ କରି ସେ ଉଠିବା ବେଳକୁ ଜଣେ ଆଗନ୍ତୁକ ଉପରେ ତା'ର ଆଖି ପଡ଼ିଗଲା । ଆଗନ୍ତୁକର ବେଶଭୂଷାରୁ ବୁଝି ହେଉଥିଲା ଯେ ସେ ବି ଜଣେ ତାନ୍ତ୍ରିକ ।

"ତମେ ଶରଭ କହୋ?" ଆଗନ୍ତୁକ ପଚାରିଲା ।

ଶରଭ ଏଭଳି ପ୍ରଶ୍ନରେ ବିରକ୍ତ ହେଲା । "ହଁ । ମୁଁ ମହାତାନ୍ତ୍ରିକ ଶରଭ ଚନ୍ଦ୍ର ! ତମେ କିଏ?" ସେ ପଚାରିଲା ।

"ହାଃ ହାଃ ! ମୁଁ କିଏ? କାହିଁକି ତମେ ମହାତାନ୍ତ୍ରିକ ପୂର୍ଣ୍ଣଚନ୍ଦ୍ରର ନାମ ଶୁଣି ନାହିଁ? ତମ ଗୁରୁ ବିଚକ୍ଷଣଚନ୍ଦ୍ର ମୋର ବନ୍ଧୁ ଥିଲେ । ତମେ ତମ ଗୁରୁଙ୍କଠାରୁ ତାଙ୍କ ତନ୍ତ୍ର-ବହିଟି ପାଇ ଯାଇ ବଡ଼ ତାନ୍ତ୍ରିକ ହୋଇଛ । ଭଲ କଥା । ଭଲ କଥା । ତେବେ ଏଠାକୁ ଆସିଲ କାହିଁକି?" ଆଗନ୍ତୁକ ପଚାରିଲା ।

ଶରଭ ଚମକି ପଡ଼ିଲା । ତାନ୍ତ୍ରିକ ପୂର୍ଣ୍ଣଚନ୍ଦ୍ର ବିଷୟ ତାକୁ ଅଜଣା ନଥିଲା । ସେ ବାସ୍ତବିକ ଜଣେ ମହାତାନ୍ତ୍ରିକ ଓ ତା' ନିଜ ଗୁରୁର ସହକର୍ମୀ । କିନ୍ତୁ ପୂର୍ଣ୍ଣଚନ୍ଦ୍ର ଆଉ ଇହଲୋକରେ ନାହାନ୍ତି ବୋଲି ସେ ଶୁଣିଥିଲା । ପୂର୍ଣ୍ଣଚନ୍ଦ୍ର ତା' ଗୁରୁର ବହିଟିକୁ ଭଲ କରି ଚିହ୍ନିଥିବା କଥା । ତେଣୁ ସେ ଯେ ଗୁରୁର ବହିର



ବଳରେ ନାନା ଅସାଧ କାମ କରି ପାରୁଛୁ, ଏ ଅକ୍ଷୟ ପୂର୍ଣ୍ଣଭଦ୍ରଙ୍କଠୁଁ ଲୁଗୁଇବା ସମ୍ଭବପର ନୁହେଁ ।

"କାହିଁକି, ଏଠାକୁ ଆସିବା କ'ଣ ମନା? କିନ୍ତୁ ତାଂତ୍ରିକ ପୂର୍ଣ୍ଣଭଦ୍ର ତ ମଲେଣି ବୋଲି ଶୁଣିଥିଲି!" ଶରଭ କହିଲା ।

ଆଗନ୍ତୁକ ହସିଲା । "ହଁ, ଇଚ୍ଛା କରି ସେ ଗୁଜବ ଉଠାଇ ଦେଇ ମୁଁ କିଛିଦିନ ପାଇଁ କାଉଁରୀ କାମାକ୍ଷା ଯାଇ ନୂଆ ନୂଆ ସିଦ୍ଧି ଅର୍ଜନ କରୁଥିଲି । ଆଚ୍ଛା ଶରଭ ଭଦ୍ର, ତମେ କ'ଣ କରିପାର?" ଆଗନ୍ତୁକ ପଚାରିଲା ।

"କ'ଣ ନ କରିପାରେଁ? ମୁଁ ଇଚ୍ଛା କଲେ ଗୋଟାଏ ପରେ ଗୋଟାଏ ଗାଁ ଜାଳିଦେଇ ପାରେଁ ।"

"ସତେ? ତମେ ଯଦି ଏହା ପାରୁଥିବ; ତେବେ ତମେ ବିଚକ୍ଷଣଭଦ୍ରର ସକ୍ଷମ ଶିଷ୍ୟ ବୋଲି ସ୍ୱୀକାର କରିବାକୁ ହେବ । ତେବେ ତମେ କ'ଣ ସତରେ ଏତେ ଭୀଷଣ ବିଦ୍ୟାର ଅଧିକାରୀ ହୋଇ ପାରିଛ? ସତରେ ଗୋଟାଏ ଗାଁ ଜାଳିଦେଇ ପାରିବ?" ଆଗନ୍ତୁକ ପଚାରିଲା ।

"ଗୋଟାଏ ଗାଁ?" ତାନ୍ତ୍ରିକ ଶରଭ ଅଟ୍ଟହାସ୍ୟ କରି କହିଲା, "ମୁଁ ଚାହିଁଲେ ଗୋଟାଏ ରାଜ୍ୟ ବି ଛାରଖାର କରି ଦେଇପାରେଁ । ଗାଁ ଗଣ୍ଡା ସହର ସବୁ ପୋଡ଼ି ପାଉଁଶ କରି ଦେଇପାରେଁ!"

"ଓଃ, ମୁଁ ପୁଣି ସେସବୁ ଶସ୍ୟଶ୍ୟାମଳା କରିଦେଇ ପାରେଁ ।" ଆଗନ୍ତୁକ କହିଲା ।

"ମୁଁ ସେସବୁ ଶସ୍ୟକୁ ମୁହୂର୍ତ୍ତକ ଭିତରେ ପାଉଁଶ କରି ଦେଇ ପାରେଁ । ନଈରେ ବନ୍ୟା ଆଣି ସବୁ ଭସାଇ ଦେଇ ପାରେଁ!"

"ତମେ ବର୍ଷା ହେଉ ନଥିବା ସ୍ଥାନରେ ବର୍ଷା କରିପାର କି?" ଆଗନ୍ତୁକ ପଚାରିଲା ।

"ନିଶ୍ଚୟ ।"

"ତମେ ଦୀର୍ଘକାଳ ଅସୁସ୍ଥ ବ୍ୟକ୍ତିକୁ ସୁସ୍ଥ କରିଦେଇ ପାର କି?" ଆଗନ୍ତୁକ ପଚାରିଲା ।

"ତା' ବି ପାରେଁ ।" ଶରଭ କହିଲା ।

"ଆଚ୍ଛା! ଶୁଣ । ମୁଁ ସବୁ କଥା ଠୋକ୍-ଠୋକ୍ କହି ଦେଉଛି । ଗୋଟାଏ ରାଜ୍ୟରେ

ଦୁଇଜଣ ବଡ଼ ତାଂତ୍ରିକ ରହିବା ଠିକ୍ ହେବ ନାହିଁ । ମୁଁ ଯଦି ତମ ଶକ୍ତିର ପ୍ରମାଣ ପାଇବି, ତେବେ ରାଜାଙ୍କୁ କହି ତମକୁ "ମହାତନ୍ତ୍ର ତାଂତ୍ରିକ" ଉପାଧି ଦେବାର ବ୍ୟବସ୍ଥା କରି ଏ ରାଜ୍ୟ ଛାଡି ଚାଲିଯିବି ।" ଆଗନ୍ତୁକ କହିଲା ।

ଶରଭର ମୁହଁ ଉଜ୍ଜ୍ୱଳ ଦିଶିଲା । ସେ ବି ସେହି ଏକା କଥା ଭାବୁଥିଲା । ପୂର୍ଣ୍ଣଚନ୍ଦ୍ର ଭଳି ଜଣେ ତାନ୍ତ୍ରିକର କାରମତି ବିଷୟରେ ଲୋକେ ଯଦି ଜାଣିଥିବେ, ତେବେ ତାକୁ ବା କିଏ କେତେଟୁକୁ ମର୍ଯ୍ୟାଦା ଦେବ? ତା' ହରୁ ବିଦ୍ୟାରେ କିଏ ଆଶ୍ଚର୍ଯ୍ୟ ହେବ? ତେଣୁ ଆଗନ୍ତୁକର ଏ ପ୍ରସ୍ତାବ ତାକୁ ବହୁତ ଖୁସି କରିଦେଲା ।

"କି ପ୍ରକାର ପରୀକ୍ଷା ଚାହଁ?" ଶରଭ ପଚାରିଲା ।

"ମୋ ସହ ଆସ ।" ଏହା କହି ଆଗନ୍ତୁକ ଶରଭକୁ ଗୋଟାଏ ଅଞ୍ଚଳକୁ ନେଇ ଯାଇ କହିଲା, "ଦେଖିବା, ଏଠାରେ ବର୍ଷା କରାଇଲ! ଅନେକ ଦିନ ଧରି ଏଠି ବର୍ଷା ନାହିଁ ।"

ଶରଭ ତା' ଝଡରେ ଝୁଲୁଥିବା ଗୋଟାଏ ଅଦ୍ଭୁତ ଗେଞ୍ଜିଆ ହାଡ଼ ଛୁଇଁ କ'ଣ ସବୁ ମନ୍ତ୍ର ବୋଲିଲା ଓ ଆକାଶ ଆଡ଼କୁ ଅଙ୍ଗୁଳି ଦେଖାଇ ଶୂନ୍ୟରେ କିଛି ଗାର କାଟିଲା । ଚାହୁଁ ଚାହୁଁ ମେଘ ଘୋଟି ଆସିଲା ଓ ବର୍ଷା ହେଲା । ଶରଭ ଏବଂ ଆଗନ୍ତୁକ ଯାଇ ଗୋଟିଏ ମାଟି ଘରର ପିଣ୍ଡାରେ ଆଶ୍ରୟ ନେଲେ ।



"କିଛି ସମୟ ପରେ ଆଗନ୍ତୁକ କହିଲା, "ତମେ ବର୍ଷା କର, ତମେ ବନ୍ଦ କର । ମୁଁ ମୋ ଶକ୍ତି ପ୍ରୟୋଗ କରି ବନ୍ଦ କଲେ ତମ ସହ ପ୍ରତିଦ୍ୱନ୍ଦ୍ୱିତା କଲା ଭଳି କଥା ହେବ ।"

ପୁଣି ଶରଭ ଖୁସି ହୋଇଗଲା ଓ କହିଲା, "ବେଶ୍, ତାହାହିଁ କରିବ । ମୁଁ ଦେଖୁଛି ଏ ପର୍ଯ୍ୟନ୍ତ ମୋ ଶକ୍ତିରେ ତମର ପୂରା ବିଶ୍ୱାସ ଆସି ନାହିଁ । ହେଇ ଦେଖ, ମୁଁ ବର୍ଷା ବନ୍ଦ କରୁଛି ।"

ଶରଭ ପୁଣି ତା ଗଳାରେ ଝୁଲୁଥିବା ହାଡ଼ ଛୁଇଁ ମଂତ୍ର ପଢ଼ିଲା । ବର୍ଷା ବନ୍ଦ ହେଲା ।

"ଭଲ କଥା । ଚାଲ ରାଜପ୍ରାସାଦକୁ ଯିବା । ରାଜଧାନୀ ଏଠାରୁ ବିଶେଷ ଦୂର ନୁହେଁ ।" ଆଗନ୍ତୁକ କହିଲା ।

"କାହିଁକି? କେଉଁ ଗରଜରେ ମୁଁ ରାଜ-ପ୍ରାସାଦକୁ ଯିବି?" ଶରଭ କଣ୍ଠସ୍ୱର କଡ଼ା କରି ପଚାରିଲା ।

"ଆରେ ବାବୁ, ରାଜାଙ୍କ ସହ ପରିଚୟ ନହେଲେ ତମକୁ 'ମହାତନ୍ତ୍ର ତାନ୍ତ୍ରିକ' ଉପାଧି କିଏ ଦେବ? ରାଜାଙ୍କ ଧାରଣା ମୋ ଛଡ଼ା ତଂତ୍ରବିଦ୍ୟା ଆଉ କାହାକୁ ଜଣା ନାହିଁ । ତାଙ୍କର ସେଭଳି ଧାରଣା ତମକୁ ଦେଖିଲେ ଓ ତମ କୃତିତ୍ୱ କଥା ଜାଣିଲେ ଦୂର ହେବ ।" ଆଗନ୍ତୁକ କହିଲା ।

ଶରଭ ମୁଣ୍ଡ ହଲାଇ ସ୍ୱୀକୃତ ହେଲା ।

ଏହାପରେ ଆଗନ୍ତୁକ ଶରଭକୁ ରାଜ-ପ୍ରାସାଦକୁ ନେଇଗଲେ । ଅନ୍ତଃପୁର ଭିତରେ ରାଜକନ୍ୟା ଦୀର୍ଘକାଳ ଅସୁସ୍ଥ ରହିଥିଲେ ।





ତାଂତ୍ରିକ ଶରଭ ତାଙ୍କୁ ଅଚିରେ ଭଲ କରିଦେଲା । ରାଜକନ୍ୟା ଉଠି ବସିଲେ ।

"ସାବାସ୍, ଶରଭ, ସାବାସ୍ ।" ଏହା କହି ଆଗନ୍ତୁକ ତାକୁ ଦରବାରକୁ ନେଇଗଲେ ।

"ଆଚ୍ଛା, ଶରଭ, ତମେ ଅନ୍ୟର ମନକଥା ଜାଣିପାର ?" ଆଗନ୍ତୁକ ହଠାତ୍ ପଚାରି ଦେଲା ।

ଶରଭ କହିଲା, "ହଁ, ଚେଷ୍ଟା କଲେ ଜାଣି ପାରେଁ ।"

"ଆଚ୍ଛା କହିଲ, ମୋ ମନରେ କ'ଣ ଅଛି !" ଆଗନ୍ତୁକ ପଚାରିଲା ।

ଶରଭ ତା' ଛାତିରେ ଝୁଲୁଥିବା ହାଡ଼ ଉପରେ ହାତ ରଖି ଆଖି ବୁଜିଲା । ହଠାତ୍ ତା' ମୁହଁରେ କ୍ରୂର ଭାବ ଫୁଟି ଉଠିଲା । ସେ କହିଲା, "ଆରେ ଦୁଷ୍ଟ ! ତୁ ମୋଟେ ତାଂତ୍ରିକ ନୋହୁଁ । ତୁ ବର୍ତ୍ତମାନ ଘବୁହୁ କପଟ ମୋତେ ଏ ରାଜ୍ୟରୁ ଦୂର କରିବୁ । ତୁ..."

ସେ ନିଜ ଛାତିରେ ଝୁଲୁଥିବା ହାଡ଼ ଛୁଇଁ ଆଉ କିଛି କହିବାକୁ ଯାଉଥିଲା, ହଠାତ୍ ରାଜାଙ୍କ ନିର୍ଦ୍ଦେଶରେ ଚାରିଜଣ ବଳବାନ୍ ପ୍ରହରୀ ତା ଉପରକୁ ଲମ୍ଫ ପଡ଼ିଲେ ଓ ତା' ହାତ ଦୁଇଟି ପ୍ରଥମେ ଜବ୍ଦ କରିନେଲେ । ଆଗନ୍ତୁକ ନିଜେ ଶରଭର ଛାତିରୁ ସେ ହାଡ଼ଟି ଛଡ଼ାଇ ନେଲା ।

"ଦୁଷ୍ଟ ! ତୁ ତାକୁ ନେଇ କ'ଣ କରିବୁ ? ଘବୁହୁ ବିନା ମଂତ୍ରରେ ସିଏ କିଛି କାମ ଦେବ ?" ବନ୍ଦୀ ଶରଭ ପଚାରିଲା ।

"କିଛି କାମ ଦେବା ଦରକାର ନାହିଁ ।" ଏହା କହି ଆଗନ୍ତୁକ ତାକୁ ତଳେ କଚାଡ଼ି ଦେଲା । ତାହା ସଙ୍ଗେ ଚୂର୍ ମାର୍ ହୋଇଗଲା ।

"ଏ ଲୋକକୁ ଆମ ରାଜ୍ୟର ସୀମା ବାହାରେ ଛାଡ଼ି ଦେଇ ଆସ ।" ରାଜା ଆଦେଶ ଦେଲେ ଓ ଶରଭକୁ କହିଲେ, "ତମେ ଯଦି ପୁଣି ଏ ରାଜ୍ୟରେ ପ୍ରବେଶ କରିବ, ତେବେ ତତ୍କ୍ଷଣାତ୍ ତୁମକୁ ପ୍ରାଣଦଣ୍ଡ ଦିଆଯିବ ।"

ପ୍ରହରୀମାନେ ଶରଭକୁ ଭିଡ଼ି ଧରି ସେଠାରୁ ନେଇ ଚାଲିଗଲେ ।

ବେତାଳ ଟିକିଏ ନୀରବ ରହି ମୁକାବିଲ କଲ ଭଳି କଣ୍ଠରେ ପଚାରିଲା, "ରାଜା ! ଶରଭ ପ୍ରତି ଏଭଳି ଅନ୍ୟାୟ କରାଗଲ

କାହିଁକି ?” ସେ ବର୍ଷା ନ ହେଉଥିବା ସ୍ଥାନରେ ବର୍ଷା କରାଇଲା; ଦୀର୍ଘକାଳ ଅସୁସ୍ଥ ଥିବା ରାଜକନ୍ୟାଙ୍କୁ ସୁସ୍ଥ କଲା । ତା’ପରେ ତାକୁ ରାଜ୍ୟରୁ ବିତାଡ଼ନ କରାଯିବା ତା’ ପ୍ରତି ଘୋର ନିଷ୍ଠୁରତା ନୁହେଁ କି? ସେ ଆଗନ୍ତୁକଟି କିଏ? କାହିଁକି ସିଏ ଶରଭ ଗଛରେ ଝୁଲୁଥିବା ହାଡ଼ଟି ଚୁରମାର କରିଦେଲା ? ରାଜା! ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମର ଶିର ହେବ ସ୍କନ୍ଧଚ୍ୟୁତ ।”

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, “କହିବା ବାହୁଲ୍ୟ, ସେ ଆଗନ୍ତୁକ ରାଜାଙ୍କର ଛଦ୍ମବେଶୀ ମନ୍ତ୍ରୀ । ଶରଭ ପ୍ରତି ଯେଉଁ ବ୍ୟବହାର କରାଗଲା, ତାହା ରାଜ୍ୟର ହିତ ଦୃଷ୍ଟିରୁ କରାଗଲା । ଶରଭ ମନ୍ତ୍ରୀଙ୍କ ଗୁରୁଙ୍କ ଯୋଗୁଁ ଦୁଇଟି ଭଲ କାମ କଲା ଠିକ୍, କିନ୍ତୁ ତା’ର ସ୍ୱାଭାବିକ ପ୍ରବୃତ୍ତି ହେଲା ଅନ୍ୟକୁ ଉତ୍ପୀଡ଼ିତ କରିବା ଅଥବା ଅନ୍ୟର ଅନିଷ୍ଟ କରିବା । ରାଜା ଓ ମନ୍ତ୍ରୀ ଶରଭ ପୂର୍ବରୁ ପ୍ରତିବେଶୀ ରାଜ୍ୟରେ କ’ଣ କରିଛି, ଅବଶ୍ୟ ତା’ର ସନ୍ଧାନ ପାଇଥିଲେ । ମନ୍ତ୍ରୀ ବୁଝି ପାରିଲେ ଯେ ଗୁରୁଠାରୁ ହାସଲ କରିଥିବା ସେ ହାଡ଼ଟି ସାହାଯ୍ୟରେ ଶରଭ ନାନା ଅଲୌକିକ କାମ କରୁଛି । ତେଣୁ ମନ୍ତ୍ରୀ ହାଡ଼ଟି ଚୁର୍ ମାର କରିଦେଲେ । ଶରଭର ମନ୍ତ୍ରଶକ୍ତି ଯୋଗୁଁ ସାମୟିକ ଭାବରେ ହିତ ହେଲେ ମଧ୍ୟ ଅଧିକାଂଶ ବେଳେ ଅହିତହିଁ ହେବାର ସମ୍ଭାବନା ଅଧିକ ଥିଲା । ତେଣୁ ତାହାଠୁଁ ତା’ ଶକ୍ତି କାଢ଼ି ନେବା ଉଚିତ ହେବ ବୋଲି ରାଜା ଓ ମନ୍ତ୍ରୀ ସ୍ଥିର କରିଥିଲେ ।”

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସି ଯାଇ ପୁନର୍ବାର ସେ ବୃକ୍ଷ ଡାଳରେ ଯାଇ ଝୁଲି ପଡ଼ିଲା ।

(କଳ୍ପିତ)



# ପ୍ରଶ୍ନର ଉତ୍ତର

ସୁକୁମାର ଓ ରାମଦାସର ଘର ଏକା ମୂଲକରେ ଥିଲା । ପରେ ବନ୍ୟାରେ ସେ ମୂଲକର ବହୁତ କ୍ଷତି ହେଲା । ସୁକୁମାର ଓ ରାମଦାସ ଏକା ସମୟରେ ମଙ୍ଗଳପୁର ଗାଁକୁ ଆସି ଘରଦ୍ୱାର କରି ରହିଲେ ।

ବର୍ଷ ପାଞ୍ଚଟା ଭିତରେ ସୁକୁମାର ବେଶ୍ ଧନୀ ହୋଇଗଲା ।

ରାମଦାସ ଭାବିଲା, "ଆମେ ଦୁହେଁ ଏକା ସମୟରେ ଏକା ଗାଁକୁ ଆସିଲୁଁ । ଦୁହିଁଙ୍କ ପାଖରେ ପ୍ରାୟ କିଛି ନଥିଲା । ସୁକୁମାର କିପରି ଭାବରେ ଧନୀ ହୋଇଗଲା ?"

ଦିନେ ସେ ଖୋଲାଖୋଲି ଭାବରେ ଏହାର ରହସ୍ୟ ଜାଣିବା ସକାଶେ ସୁକୁମାର ଘରେ ଆସି ପହଞ୍ଚିଲା । ସେତେବେଳେ ସନ୍ଧ୍ୟା ହୋଇ ଆସୁଛି । ସୁକୁମାର ଦୀପ ଜାଳୁଥିଲା । ରାମଦାସକୁ ଦେଖି ଚଟେଇ ପକାଇ ଦେଲା ଓ କହିଲା, "ବସ, ବସ ! କିଛି କଥା ଅଛି ?"

"ହଁ, ଗୋଟାଏ ବିଷୟ ଜାଣିବାକୁ ଆସିଛି ।" ରାମଦାସ କହିଲା ।

"ହଉ । ଆସୁଛି ।" ଏହା କହି ସୁକୁମାର ଯାଇ ଦୀପଟି ଲିଭାଇ ଦେଲା ଓ ଆସି ରାମଦାସ ପାଖରେ ବସି ପଡ଼ିଲା ।

"ଦୀପ ଲିଭାଇ ଦେଲ କାହିଁକି ?" ରାମଦାସ ପଚାରିଲା ।

"ଆମେ ତ ଗପସପ କରିବା । ସେତିକି ସମୟ ଡିବିଟାରେ ତେଲ ପୋଡ଼ୁଥିବ କାହିଁକି ?" ସୁକୁମାର ଉତ୍ତର ଦେଲା ।

ରାମଦାସ ଉଠି ପଡ଼ିଲା ।

"କିହୋ, କ'ଣ ପଚାରିବ ପରା ?" ଆଶ୍ଚର୍ଯ୍ୟ ହୋଇ ସୁକୁମାର ପଚାରିଲା ।

"ଯାହା ପଚାରିବାର ଥିଲା, ସେ ପ୍ରଶ୍ନର ଉତ୍ତର ପାଇଗଲି ।" ଏହା କହି ରାମଦାସ ଚାଲିଗଲା ।





# ବଞ୍ଚିବାର ଯନ୍ତ୍ରଣା!

ବିନାୟକ 'ମାଛିକୁ ମ' କହିବା ଲୋକ ନୁହେଁ । ସେ ଭଲ ଗୃହସ୍ଥୀରେ ଥାଏ, କିନ୍ତୁ ସେଥିଯୋଗୁଁ ସେ ଗର୍ବ କରିବାର କେହି କେବେ ଜାଣି ନଥିଲେ । ସବୁ କଥାରେ ସେ ସଙ୍କୋଚ କରୁଥାଏ ।

ଦୈବକୁ ସେ ଯେଉଁ ଝିଅକୁ ବିଭା ହେଲା, ତା'ର ସ୍ୱଭାବ ମଧ୍ୟ ସେମିତି । ସବୁ କଥାରେ ସଙ୍କୋଚ । କେହି ତାକୁ ଦୁଇପଦ ଶୁଣାଇ ଦେଲେ ବି ସେ ପାଟି ଫିଟାଇବ ନାହିଁ । ନାମ ତା'ର ସୁନନ୍ଦା ।

ବାହାଘର ପରେ ସୁନନ୍ଦା ସହରକୁ ଆସିଲା । ବିନାୟକ ଭଡ଼ା ଘରେ ରହୁଥାଏ । ଆଖ-ପାଖରେ ଅନେକ କର୍ମଗୃହସ୍ଥ ବସା କରି ରହୁଥାନ୍ତି । କିନ୍ତୁ ସଙ୍କୋଚ ଯୋଗୁଁ ବିନାୟକ ବା ସୁନନ୍ଦା କେହି କୌଣସି ପ୍ରତିବେଶୀଙ୍କ ସହ ବନ୍ଧୁତା ସ୍ଥାପନ କରିପାରି ନଥାନ୍ତି ।

ଦିନେ ଦୁହେଁ ସହରର ଅନ୍ୟ ଏକ ଅଞ୍ଚଳରେ ଥିବା ମନ୍ଦିରକୁ ଯାଇଥାନ୍ତି । ସେଦିନ ମନ୍ଦିରରେ କୌଣସି ବିଶେଷ ଅନୁଷ୍ଠାନ ନଥାଏ; ତେଣୁ ଲୋକ ଭିଡ଼ ନଥାଏ ।

ଦୁହେଁ ମନ୍ଦିରରୁ ବାହାରି ଆସୁଛନ୍ତି, ଗୋଟାଏ ବୁଢ଼ା ଥରି ଥରି ପାଖକୁ ଭିଡି ଆସି କହିଲା, "ବାବୁ, ମୋତେ ଟିକିଏ ଧରି ନେଇଯାଅ । ନହେଲେ ମୁଁ ତଳେ ପଡ଼ିଯିବି ।"

ବିନାୟକ ତାକୁ ଧରିନେଲା ଓ ଧୀରେ ଧୀରେ ବାଟ ଚଲାଇ ନେଇ ଯାଉଥାଏ । ସେତିକି-ବେଳେ ସେଠି ପହଞ୍ଚିଗଲା ଗୋଟାଏ ବାହାପିଆ । କାହାରି ଦରକାର ଥାଉ ନ ଥାଉ ସମସ୍ତଙ୍କୁ ପରାମର୍ଶ ଦେବା, ଗାର୍ଜନ ଭଳି ତାଗ୍‌ଦା କରିବା ଥିଲା ସେ ବାହାପିଆର ଅଭ୍ୟାସ । ସେ ବିନାୟକ ଆଡ଼େ କଟମଟ କରି ଅନାଇ କହିଲା, "ଦେଖ ହୋ ଯୁବତୀର ପତି! ବୁଢ଼ା ଓ ଅସୁସ୍ଥ



ବାପାଙ୍କୁ ଏମିତି ଟଳଇ ଟଳଇ ନିଅନ୍ତି? ତମ ବେଶଭୂଷାରୁ ତ ମନେ ହୁଏ ତମେ ବେଶ୍ ଥିଲାବାଲା ଲୋକ! କାହିଁକି, ଏ ସହରରେ ଗାଡ଼ି ଘୋଡ଼ା କ'ଣ ଅଭାବ ହୋଇଛି?"

ଏତିକି କହି ସେ ବାହାପିଆ ଗୋଟାଏ ଖାଲି ଗାଡ଼ିକୁ ହାତ ଦେଖାଇ ବନ୍ଦ କଲା ଓ ବୁଢ଼ାକୁ ସେଥିରେ ବସାଇ ବିନାୟକ ଓ ସୁନନ୍ଦାକୁ କହିଲା, "ବଲବଲ କରି ଚାହିଁଛ କ'ଣ? ଉଠି ବସ!"

"ଆଜ୍ଞା, ଗାଡ଼ି ଆମର..."

ବିନାୟକ ଆଉ କିଛି କହିପାରିବା ପୂର୍ବରୁ ସେ ବାହାପିଆ କହିଲା, "ଆବଶ୍ୟକ ନାହିଁ! ଏହି କଥା କହୁଛ ତ? ହଇହେ ବାବୁ, ମୁଁ କ'ଣ ଅନ୍ଧ ହୋଇଛି? ତମେ ଓ ତମ ସ୍ତ୍ରୀ ଯେ ଭେଣ୍ଡିଆ, ସେକଥା କ'ଣ ଦେଖି ପାରୁନାହିଁ? ମୁଁ କ'ଣ କହୁଛି ଯେ ତମେ ଦୁଇଜଣ ଚାଲିପାରିବ ନାହିଁ? ମୁଁ ତମ ବାପାଙ୍କ ଅବସ୍ଥା ଯୋଗୁଁ ଗାଡ଼ି ଅଟକାଇଲି। ତମେ ଭାବୁଥିବ ମୁଁ କିଏ? ମୁଁ ତମର କେହି ନ ହୋଇପାରେଁ! କିନ୍ତୁ ମୁଁ ଜଣେ ହିତାକାଂକ୍ଷୀ; ମୋର ବିବେକ ଅଛି। ତମର ନାହିଁ ବୋଲି ମୁଁ କହୁନାହିଁ। କିନ୍ତୁ ତମ ଭିତରେ ବିବେକ ନିଦରେ ଶୋଇଛି। ତାକୁ ଡାକହାକ କରି ଉଠାଇବା ହେଲା ମୋର କର୍ତ୍ତବ୍ୟ। ବୁଝି ପାରୁଛ?"

ବିନାୟକ ସେ ଭଦ୍ରଲୋକଙ୍କ ବକ୍ତୃତା ଶୁଣିବାକୁ ପ୍ରସ୍ତୁତ ନଥିଲା।

ନିଜ ସ୍ୱଭାବ ଯୋଗୁଁ ସେ ଦୁହେଁ କହିପାରିଲେ ନାହିଁ ଯେ ବୁଢ଼ାଟି ସେମାନଙ୍କର କେହି ନୁହେଁ। ଦୁହେଁ ଗାଡ଼ିରେ ବସିଲେ। ବାହାପିଆ ଗାଡ଼ିବାଲାକୁ ତାଗିଦା କରି କହିଲା, "ବାବୁଙ୍କଠୁଁ ବେଶି ପଇସା ଆଦାୟ କରିବୁ ନାହିଁଟି! ତୋର ଯେତିକି ପ୍ରାପ୍ୟ ସେତିକିରୁ ବେଶି ନେଲେ ନଗରପାଳଙ୍କଠିଁ ନାଲିସ୍ କରିବି, ଜାଣିଥା।"

"ନାହିଁ, ନାହିଁ, ମୁଁ କାହିଁକି ବେଶି ପଇସା ଦାବି କରିବି? ବାବୁ ଭଦ୍ରଲୋକ, ସେ ବଳେ ମୋତେ ବେଶି ଦେବେନାହିଁ? ଆମ ଭଳି ଗରିବଙ୍କୁ ନ ଦେବେ ତ ଭଗବାନ ତାଙ୍କୁ କାହିଁକି ଦେଇଛନ୍ତି? ମୋର ବି ଘରେ ଏମିତି

ବୁଢ଼ା ବାପା ଅଛୁ!" ଗାଡ଼ିବାଲା ହସିଦେଇ କହିଲା ଓ ଗାଡ଼ି ହାଙ୍କିଦେଲା ।

ଗାଡ଼ିବାଲା ବିନାୟକଙ୍କୁ ପଚାରି ତା' ଘର ଆଗରେ ଯାଇ ପହଞ୍ଚିଲା । ବୁଢ଼ାକୁ ଧରାଧରି କରି ଗାଡ଼ିରୁ ଓହ୍ଲାଇ ବିନାୟକ ଓ ସୁନନ୍ଦା ଘର ଭିତରକୁ ନେଇଗଲେ । ବୁଢ଼ା ଖାଇପିଇ ବାରନ୍ଦାରେ ଥିବା ଗୋଟିଏ ଖଟିଆରେ ଶୋଇ ପଡ଼ିଲା ।

ସକାଳେ ଉଠିବା ବେଳକୁ ସେ ବେଶ୍ ତାଜା ଦିଶୁଛି । ତାକୁ ଯେତେ ବୁଢ଼ା ବୋଲି ମନେ ହେଉଥିଲା, ସେ ସେତେ ବୁଢ଼ା ନୁହେଁ ।

"ମା, ମୋ ପାଇଁ ଯେଉଁ ରନ୍ଧା କରିବ, ସେଥିରେ ଟିକିଏ ବେଶି ଚିନି ଦେବ! ହଁ, ଆଉ ଗୋଟାଏ କଥା । ମୋତେ ତେଲ ଜିନିଷ ବେଶି ରୁଚେ ନାହିଁ । ଘିଅରେ ଆପତ୍ତି ନାହିଁ । ବିଧାତା ଯେତେବେଳେ ତମ ଉପରେ ମୋ ଦାୟିତ୍ୱ ଲଦି ଦେଇଛି, ତମକୁ ମୋର ସୁବିଧା ଅସୁବିଧା କଥା ସବୁ କହିଦେବା ଉଚିତ!" ବୁଢ଼ା ସୁନନ୍ଦାକୁ କହିଲା ।

"ହଁ, ହଁ, ନ କହିବ କାହିଁକି? ତମେ ସୁସ୍ଥ ହେଲଣି, ଏଇ ଆମ ପାଇଁ ଯଥେଷ୍ଟ ।" ବିନାୟକ କହିଲା ।

"ନା, ସୁସ୍ଥ ହେଲଣି କେଉଁଠି? ତେବେ ତମ ହେପାଜତରେ ହେଇଯିବ ବୋଲି ବିଶ୍ୱାସ । ସମୟ ଲାଗିବ । ଏ ବୟସରେ ଥରେ ବେମାର ହେଲେ ସହଜରେ ଯାଏ!" ବୁଢ଼ା କହିଲା ।



"ବୁଢ଼ା କେତେଦିନ ରହିବ?" ସୁନନ୍ଦା ସେଦିନ ଉପରଓଳିକୁ ବିନାୟକକୁ ପଚାରିଲା ।

"ସୁସ୍ଥ ହେଲେ ବଳେ ଚାଲିଯିବ! ଦୁଇ ଚାରିଦିନ ଯାଉ, ଦେଖାଯିବ!" ବିନାୟକ କହିଲା ।

କିନ୍ତୁ ଦୁଇ ସପ୍ତାହ—ଓ ଚାରି ସପ୍ତାହ ବିତିଯିବା ସତ୍ତ୍ୱେ ବୁଢ଼ାର କାହିଁ ଲୁଆଡ଼େ ଯିବାର ଲକ୍ଷଣ ଦେଖାଗଲା ନାହିଁ । ଖାଲି ଯେ ସେ ଖାଇପିଇ ରହୁଥାଏ, ସେତକି ନୁହେଁ, କଥା କଥାକେ ମିଜାଜ୍ ଦେଖାଉଥାଏ । ପାଖ ପଡ଼ୋଶୀମାନେ ଭାବୁଥାନ୍ତି ସେ ହୁଏତ ବିନାୟକର ବାପା ନହେଲେ ସୁନନ୍ଦାର ବାପା ।



"କଥା କ'ଣ? ବୁଢ଼ା କ'ଣ ସବୁଦିନେ ରହିବ?" ଦିନେ ସୁନନ୍ଦା ଧିର କଣ୍ଠରେ ବିନାୟକକୁ ପଚାରିଲା। ବୁଢ଼ା ଯେ ସେ କଥା ଶୁଣି ପାରିବ, ତାହା ସେ ଆନ୍ଦାଜ କରି ପାରି ନଥିଲା। କିନ୍ତୁ ବୁଢ଼ା ଶୁଣି ପକାଇ ପାଟି କରି କହିଲା, "ଶୁଣ। ତମକୁ ଠେକ୍‌ଠୋକ୍ କହିଦିଏଁ। ସେଦିନ ତମେମାନେ ମୋତେ ଏଠାକୁ ଆଣି ନଥିଲେ ମୁଁ ମରି ଯାଇଥାନ୍ତି। ମୋ ଦୁଃଖ ଯାଇଥାନ୍ତା। ତମେମାନେ ମୋତେ ଆଣି ପୁଣି ବଞ୍ଚିବାର ଦୁଃଖରେ ପକାଇଲ। ମୋତେ ପୋଷିବାକୁ ତମେ ବାଧ୍ୟ। ତେଣୁ ମୁଁ କେବେ ଯିବି, ସେ ପ୍ରଶ୍ନ ଆଉ ଉଠାଇବ ନାହିଁ। ବୁଝିଲ?"

ବୁଢ଼ାର ଏଭଳି ସୂଚନା ଶୁଣି ବିନାୟକ ଓ ସୁନନ୍ଦା କାବା ହୋଇଗଲେ। ଆହୁରି କିଛିଦିନ ବିତିଗଲା। ବିନାୟକ ଗୋଟିଏ ଉପାୟ ପାଞ୍ଚିଲା। ସେ ଭାବିଲା ସେମାନେ କିଛିଦିନ ପାଇଁ ବାହାରକୁ ଯାଉଛନ୍ତି ଜାଣିଲେ ବୁଢ଼ା ବାଧ୍ୟ ହୋଇ ବିଦାୟ ନେବ।

"ଆମେ କେଇଦିନ ପାଇଁ ବାହାରକୁ ଯିବୁଁ।..."

ବିନାୟକ ଆଉ କିଛି କହିବା ପୂର୍ବରୁ ବୁଢ଼ା କହିଲା, "ଚିନ୍ତା ନାହିଁ। ମୁଁ ଘର ଜଗିଥିବି। ମୁଁ ନିଜେ ରୋଷେଇ କରିନେବି। ରୋଷେଇ ଘରେ ଯଥେଷ୍ଟ ଚାଉଳ ଡ଼ାଲି ଓ ଆଳୁ ରଖି ଦେଇଗଲେ ହେଲା।"

ବାହାରକୁ ଯିବେ ବୋଲି ଯେତେବେଳେ କହି ଦେଇଛନ୍ତି, ସେତେବେଳେ ନ ଯିବେ କିପରି? ବିନାୟକ ଓ ସୁନନ୍ଦା ବାଧ୍ୟ ହୋଇ ସହରର ଅନ୍ୟ ଏକ ପ୍ରାନ୍ତରେ ଥିବା ଗୋଟିଏ ଅତିଥିଭବନରେ ଦୁଇଦିନ କଟାଇ ତୃତୀୟ ଦିନ ଫେରିଲେ। ଆସିବା ବେଳକୁ ବୁଢ଼ା କଟମଟ କରି ଅନାଇ ରହିଛି। ସେ କହିଲା, "ମୁଁ ତମକୁ ଯଥେଷ୍ଟ ଜିନିଷ ପତ୍ର ରଖିବାକୁ କହି ଦେଇଥିଲି ନା? ଚାଉଳ ଛଡ଼ା ଆଉ ଯାହା ରଖିଥିଲ, ସେଥିରେ ଦେଢ଼ଦିନ ଚଳିବ। ତମେ ଆସୁଛ ଦୁଇଦିନ ପରେ!"

ବିନାୟକ ଦୀର୍ଘ ନିଃଶ୍ୱାସ ଛାଡ଼ିଲା। ସେଦିନ ରାତିରେ ସେ ସୁନନ୍ଦାକୁ କହିଲା, "ଧରି ମୋ

ବାପା ବା ତମ ବାପା ଆସି ଏଠି ରହିଥିଲେ ତ ଏମିତି ଭାବରେ ତାଙ୍କ ଦାୟିତ୍ୱ ନେବାକୁ ହୁଅନ୍ତା !”

“ସେକଥା ଠିକ୍ । କିନ୍ତୁ ବୁଢ଼ା ଯେମିତି ମାଡ଼ି ବସି ଆମକୁ ବୋକା ବନାଇ ରହିଛି, ସେଥିପାଇଁ ଯାହା ଦୁଃଖ !” କହିଲା ସୁନନ୍ଦା ।

ଏ ଘଟଣାର ପନ୍ଦର ଦିନ ପରେ ଦିନେ ହଠାତ୍ ସୁନନ୍ଦା ଘରେ ପହଞ୍ଚିଲା ତା' ବାଲ୍ୟ-ସଖି ଅମୃତା । ସେ ଏ ସହର ଦେଇ ଅନ୍ୟତ୍ର ଯାଉଥିଲା । ଅମୃତା ସହ ଦିନଟିଏ ରହିବା ପାଇଁ ସେ ମନସ୍ଥ କରି ଆସିଥିଲା ।

ଅମୃତାକୁ ପାଇ ସୁନନ୍ଦାର ଆନନ୍ଦ କହିଲେ ନ ସରେ । ଦୁହେଁ ଗପ ହେଉଛନ୍ତି, ବୁଢ଼ା ଆସି ଧମକ ଦେଇ କହିଲା, “କ'ଣ, ମୋତେ ଖାଇବାକୁ ଦେବା କଥା ଭୁଲିଗଲ !”

ସଙ୍ଗେ ସଙ୍ଗେ ସୁନନ୍ଦା ଯାଇ ବୁଢ଼ାକୁ ଖାଇବାକୁ ଦେଲା । ବୁଢ଼ା ବିରକ୍ତି ପ୍ରକାଶ କରି କହୁଥାଏ, “ମୋତେ ବାଇଗଣ ଭଲ ଲାଗେ ନାହିଁ ବୋଲି କେତେଥର କହିଛି ! ତଥାପି ଏ ପରିବା କାହିଁକି ଆଣ ? ମୋତେ ସୁଖରେ ମରିବାକୁ ଦେଲ ନାହିଁ କି ସୁଖରେ ବଞ୍ଚିବାକୁ ଦେଉନାହଁ !”

ଅମୃତା ସୁନନ୍ଦାକୁ ମୃଦୁ କଣ୍ଠରେ କହିଲା, “ତୋ ଶ୍ୱଶୁର ବଡ଼ କଡ଼ା ଲୋକ ତ !”

“ମୋ ଶ୍ୱଶୁର କିଏ ? ଏ ବୁଢ଼ା ତ...” ସୁନନ୍ଦା ବୁଢ଼ାର ଇତିହାସ ଗପିଲା । ଅମୃତା କାବା ହୋଇ କହିଲା, “ସୁନନ୍ଦା ! ତୁ ଅତି



ଭଲ ହିଁଅ ବୋଲି ମୋତେ ଜଣା । କିନ୍ତୁ ତୁ ଏତେ ଦୁର୍ବଳ କାହିଁକି? ଏ ଲୋକକୁ ଦେଖିଲେ ବୁଝି ହେବ ଇଏ ଗୋଟାଏ ଠକ । ଆଚ୍ଛା, ଆଜି ମୁଁ ଏହାକୁ ବିଦା କରି ତେବେ ଯାଇ କାଳକୁ ଯିବ ।"

ଏହା ପରେ ସେ ଅତି ମୃଦୁ କଣ୍ଠରେ ସୁନନ୍ଦାକୁ କିଛି କହିଲା ।

ସନ୍ଧ୍ୟାବେଳେ ବୁଢ଼ାକୁ ଜଳଖିଆ ଦେବା କଥା । ସୁନନ୍ଦା ଇଚ୍ଛା କରି ବିଳମ୍ବ କଲା । ବୁଢ଼ା ରୋଷେଇ ଘର ଆଡ଼େ ଆସୁଥିବାର ବୁଝିପାରି ସେ ଅମୃତା ସହ କଥା ଆରମ୍ଭ କଲା ।

ଅମୃତା କହିଲା, "ସୁନନ୍ଦା! ବୁଢ଼ାଙ୍କର ବଞ୍ଚିବାକୁ ଇଚ୍ଛା ନଥିଲା । ତମେମାନେ କାହିଁକି ଜୀବନର ଏ ଦୁଃଖ କଷ୍ଟ ଭିତରକୁ ତାଙ୍କୁ ଟାଣି ଆଣିଲ? ଅନ୍ୟାୟ କରିଛ । ତମର କର୍ତ୍ତବ୍ୟ, ସେ ଯେପରି ଆରାମରେ ମରିଥାନ୍ତେ, ସେହିପରି ଆରାମରେ ତାଙ୍କୁ ମରିବାକୁ ଦେବା । ଏଇ ନିଅ । ମୋ ଗୁରୁ ମୋତେ ଦେଇଥିଲେ । ଜୀବନ ପ୍ରତି ଯାହାର ମମତା ତୁଟି ଯାଇଥିବ, ତାକୁ ତା' ଖାଦ୍ୟରେ ଏ ସାମାନ୍ୟ ଟିକେ ମିଶାଇ ଖୁଆଇ ଦେଲେ ସେ ରାତିରେ ଶୋଇଥିବା ବେଳେ ବିଧାତା ଆସି ତାକୁ କୋଳ କରି ନେଇଯିବେ । ତେଣିକି ସେ ସ୍ୱର୍ଗକୁ ଯିବ ନା ନର୍କକୁ ଯିବ, ସେକଥା ତା' କର୍ମ ଅନୁସାରେ ସ୍ଥିର ହେବ । ନିଅ । ବୁଢ଼ାଙ୍କୁ ଆଉ ଯନ୍ତ୍ରଣା ଦିଅନାହିଁ"।

ବୁଢ଼ା ରୋଷେଇ ଘର ଦ୍ୱାର ପାଖରୁ ଲେଉଟି ଯିବାର ସେ ଦୁହେଁ ବୁଝି ପାରିଲେ । କିଛି ସମୟ ପରେ ସୁନନ୍ଦା ଜଳଖିଆ ଧରି ବାରନ୍ଦାକୁ ଗଲା । ବୁଢ଼ା ସେତେବେଳେ ଉଠି ଦ୍ୱାର ପାଖରେ । ସେ କହିଲା, "ମୁଁ କିଛି ଖାଇବ ନାହିଁ । ମୋତେ ଭୋକ ଲାଗୁନାହିଁ । ମୋ ପୁଅ ମୋତେ ଖୋଜୁଛି ବୋଲି ଖବର ପାଇଲି । ଯାଉଛି । ବିନାୟକ ଆସିବା ଯାଏ ରହି ପାରୁନାହିଁ ।"

ବୁଢ଼ା ଚାଲିଗଲା । ଅମୃତା ଓ ସୁନନ୍ଦା ପରସ୍ପର ଚୁହାଁଚୁହିଁ ହୋଇ ହସି ଉଠିଲେ ।






# ବରଗଛର ବଳୀ

ପ୍ରାଚୀନ କାଳରେ କାଶୀ ରାଜ୍ୟରେ ବ୍ରହ୍ମଦତ୍ତ ରାଜତ୍ୱ କରୁଥା'ନ୍ତି । ତାଙ୍କ ପୁଅ ଭାବରେ ଜନ୍ମ ନେଇଥା'ନ୍ତି ବୋଧିସତ୍ତ୍ୱ । ତାଙ୍କ ନାମ ଥାଏ ବ୍ରହ୍ମଦତ୍ତକୁମାର । ସେ ଷୋଳବର୍ଷ ପର୍ଯ୍ୟନ୍ତ ତକ୍ଷଶିଳାରେ ରହି ବିଦ୍ୟାଶିକ୍ଷା କଲେ ଓ ପରେ ଅଧ୍ୟୟନ ଶେଷ ହେବା ପରେ ରାଜ୍ୟକୁ ଫେରି ଆସି ଯୁବରାଜ ଭାବରେ ଅଭିଷିକ୍ତ ହେଲେ ।

ସେ ଯୁଗରେ ପ୍ରଜାମାନେ ଅନେକ ଅନ୍ଧ-ବିଶ୍ୱାସ ନେଇ ଚାଲୁଥିଲେ । ଅନେକ ଛୋଟ ଛୋଟ ଦେବୀଦେବତାଙ୍କୁ ସଦାବେଳେ ବଳୀ ଦେଉଥା'ନ୍ତି । ଏସବୁ ମିଥ୍ୟା କର୍ମକାଣ୍ଡ, ଅନାଚାର ଓ ନିଷ୍ଠୁରତା ଦେଖି ଯୁବରାଜଙ୍କ ମନ ବହୁତ ଦୁଃଖ ହେଲା । ମନେ ମନେ ଭାବିଲେ, "ମୁଁ ରାଜା ହେବା ମାତ୍ରେ ଏ ସବୁ ବନ୍ଦ କରି ଦେବି ।"

କାଶୀ ନଗରୀର ସୀମାରେ ଗୋଟାଏ ବଡ଼ ବରଗଛ ଥାଏ । ଲୋକମାନଙ୍କର ବିଶ୍ୱାସ ଯେ ସେଠାରେ ଜଣେ ଦେବୀ ବାସ କରନ୍ତି । ତେଣୁ ସେମାନେ ନାନା ପ୍ରକାର ପୂଜା କରିବାକୁ ଯା'ନ୍ତି ନାନା ପ୍ରକାର କାମନାର ପୂରଣ ପାଇଁ ।

ଦିନେ ଯୁବରାଜ ମଧ୍ୟ ରଥ ଚଢ଼ି ସେଠାକୁ ଗଲେ ଓ ସାଧାରଣ ଲୋକଙ୍କ ପରି କିଛି ପୁଷ୍ପ ଅର୍ପଣ କରି ଗଛଟିକୁ ତିନିବାର ପରିକ୍ରମା କଲେ । ସେହିଦିନଠାରୁ ସେ ବରାବର ସେଠାକୁ ଯା'ନ୍ତି ।

କିଛିଦିନ ପରେ ରାଜା ମରିଗଲେ । ସ୍ୱାଭାବିକ ରୂପରେ ଯୁବରାଜ ରାଜା ହେଲେ ।

ରାଜା ହେବା ମାତ୍ରେ ଦରବାରରେ ରାଜା ଘୋଷଣା କଲେ, "ସଭାସଦ୍‌ବର୍ଗ, ଆପଣ-ମାନେ ବୋଧହୁଏ ଜାଣନ୍ତି ନାହିଁ ମୁଁ ରାଜା କିପରି ହେଲି । ପୁଣି ଏତେ ଶୀଘ୍ର ।

ଆପଣମାନେ ଦେଖିଛନ୍ତି ମୁଁ ବରାବର ବରଗଛ ପାଖକୁ ଯାଉଥାଏ । ସେଥିରେ ଯେଉଁ ଦେବୀ ଅଛନ୍ତି ତାଙ୍କ ପାଖରେ ମୁଁ ଏଇ ମାନତ କରିଥିଲି ଯେ ମୁଁ ରାଜା ହେବା ମାତ୍ରେ ଏକ ହଜାର ପ୍ରାଣୀଙ୍କୁ ଆଣି ବଳୀ ଦେବି । ଏବେ ମୋ କଥା ମୋତେ ରକ୍ଷା କରିବାକୁ ପଡ଼ିବ ।"

ନୂଆ ରାଜାଙ୍କ କଥା ଶୁଣି ସଭାସଦ୍ ଖୁବ୍ ଖୁସି ହେଲେ । ମନ୍ତ୍ରୀମାନେ ତତ୍କ୍ଷଣାତ୍ ରାଜାଙ୍କୁ ପଚାରିଲେ, "ମହାରାଜ, କି କି ପଶୁ ଓ କେତେ କେତେ ସଂଖ୍ୟାରେ ଅଣା ହେବେ ଆଜ୍ଞା କରନ୍ତୁ ।"

"ମୁଁ ତ କହିଲି ପ୍ରାଣୀ! ତେଣୁ ତମେ ଯେଉଁ ପଶୁଙ୍କ କଥା ଭାବୁଛ ସେପରି ନୁହେଁ । ଯେଉଁ ମନୁଷ୍ୟରୂପୀ ପଶୁମାନେ ଦେବତାଙ୍କ ନାମରେ ନିରୀହ ପଶୁଙ୍କୁ ବଳୀ ଦେଉଛନ୍ତି, ସେପରି ଏକହଜାର ପଶୁଙ୍କୁ ନେଇ ଆସ, ଆଜିହିଁ ସେମାନଙ୍କୁ ସେଠାରେ ବଳୀ ଦିଆଯିବ । ଆଜି ଆଜିଠାରୁ ଯିଏ ପଶୁଙ୍କୁ ବଳୀ ଦେବ ସେମାନଙ୍କୁ ବରଗଛ ପାଖରେ ବଳୀ ଦିଆଯିବ। ଏକଥା ଧେଣ୍ଡୁରା ପିଟି ସାରା ରାଜ୍ୟରେ ଜଣାଇ ଦିଅ ।" ରାଜା କହିଲେ ।

ସାରା ଦରବାର ରାଜାଙ୍କ ଘୋଷଣା ଶୁଣି ଚୁପ୍ ହୋଇ ବସିଲେ । କାରଣ ତାଙ୍କ ଭିତରୁ ଅଧିକାଂଶ ପଶୁ ବଳୀ ଦେଉଥିଲେ ।

ରାଜା କହିଲେ, "ପଶୁ ଅସହାୟ ବୋଲି ମଣିଷ ନିଜ ବଳ ପ୍ରୟୋଗ କରି ତାକୁ ନିଜ ସ୍ୱାର୍ଥସିଦ୍ଧି ପାଇଁ କାହିଁକି ହତ୍ୟା କରିବ ? କିଏ ତାକୁ ଦେଲା ଏ ଅଧିକାର ?"

ସାରା ରାଜ୍ୟରେ ରାଜାଙ୍କ ବାର୍ତ୍ତା ପ୍ରଚାର କରାଗଲା । ସେହି ଦିନଠାରୁ ବଳୀ ପ୍ରଥା ରାଜ୍ୟରେ ବନ୍ଦ ହୋଇଗଲା । କହିବା ବାହୁଲ୍ୟ ରାଜା ନିଜେ ମଣିଷ ବଳୀ ଦେବାର ମର୍ମାର୍ଥ ସମସ୍ତେ ବୁଝିପାରିଲେ ଓ ଦୟାଳୁ ରାଜାଙ୍କର ପ୍ରଶଂସା କଲେ । ସେମାନଙ୍କୁ ବୁଝାଇବା ପାଇଁ ରାଜା ଏପରି କଥା କହିଥିଲେ ।






ଭାରତର ନଦନଦୀ

# ଗଙ୍ଗାର ଆତ୍ମକଥା

ଜହ୍ନରାତି । ନାରଦ ମୁନି ପୃଥିବୀ ପର୍ଯ୍ୟଟନ ଶେଷ କରି ସ୍ୱର୍ଗକୁ ଯାଉଥିଲେ । ବୀଣା ବଜାଇ, ବିଷ୍ଣୁ ନାମ ଗାନ କରି ହିମାଳୟର ମନୋରମ ଉପତ୍ୟକା ଅତିକ୍ରମ କରି ସେ ଅଗ୍ରସର ହେଉଥାନ୍ତି ।

ହଠାତ୍ ସେ ଦେଖିଲେ ଠାଏଁ ଦେବ-ଦେବୀ ଭଳି ଦିଶୁଥିବା ଦଳେ ପୁରୁଷ ଓ ମହିଳା ବସିଛନ୍ତି । ସେମାନେ ସମସ୍ତେ ଦିଶୁଥିଲେ ଅତ୍ୟନ୍ତ ସୁନ୍ଦର । କିଏ ସେମାନେ ? ନାରଦ କୌତୁହଳୀ ହୋଇ ସେମାନଙ୍କ ପାଖକୁ ଗଲେ ।





"ଆପଣମାନଙ୍କ ପରିଚୟ ?" ନାରଦ ସେମାନଙ୍କୁ ପଚାରିଲେ । ପାଖକୁ ଯାଇ ସେ ଦେଖିଲେ, ସେମାନଙ୍କ ଭିତରୁ ପ୍ରତ୍ୟେକେ ଗୋଟାଏ ନା ଗୋଟାଏ ଅଙ୍ଗ ପ୍ରତ୍ୟଙ୍ଗ ହରାଇଛନ୍ତି । କାହାର ଗୋଟିଏ ଆଖି ନାହିଁ ତ କାହାର ନାକରେ ଆଘାତ ଚିହ୍ନ; କାହାର ବା କାନ ଖଣ୍ଡିଆ ।







ନାରଦ ଜିଗର କରିବାରୁ ସେମାନେ କହିଲେ କି ସେମାନେ ହେଲେ ଭିନ୍ନ ଭିନ୍ନ ରାଗ ରାଗିଣୀର ଆତ୍ମ-ରୂପ; ଜାତରେ ଗନ୍ଧର୍ବ । ସଙ୍ଗୀତଜ୍ଞମାନେ ଯେତେବେଳେ କୌଣସି ରାଗ ବୋଲି-ବାରେ ଭୁଲ୍ କରନ୍ତି ବା ଅହଙ୍କାର ପୋଷଣ କରି ବୋଲନ୍ତି, ସେତେବେଳେ ସେ ରାଗର ଗନ୍ଧର୍ବ ଦେହରେ ଗୋଟାଏ ଧକ୍କା ବସେ । କ୍ରମେ ସେମାନେ ବିକଳାଙ୍ଗ ହୋଇଛନ୍ତି ।

ନାରଦ ସ୍ୱୟଂ ଜଣେ ଗାୟକ । ତେଣୁ ସେ ଏକଥା ଶୁଣି ଲଜ୍ଜିତ ହେବା ସ୍ୱାଭାବିକ । ଗନ୍ଧର୍ବମାନେ କହିଲେ କି କେବଳ ଯଦି ସର୍ବୋତ୍ତମ ଗାୟକ, ଶିବ, ଗୀତ ବୋଲିବେ, ତାହା ଶୁଣି ସେମାନେ ନିଜ ନିଜ ହୃତ ଅଙ୍ଗ ଫେରି ପାଇବେ । ନାରଦ କୈଳାଶ ଗଲେ ଓ ଶିବଙ୍କୁ ଗୀତ ବୋଲିବା ସକାଶେ ପ୍ରାର୍ଥନା କଲେ ।





ଶିବ କହିଲେ କି ସେ ଗୀତ ଗାଇବାକୁ ରାଜି, କିନ୍ତୁ ଜଗତର ଦୁଇ ସର୍ବୋତ୍ତମ ଶ୍ରୋତା ବ୍ରହ୍ମା ଓ ବିଷ୍ଣୁଙ୍କ ଭିତରୁ ଅନ୍ତତଃ ଜଣେ ତାଙ୍କ ଶ୍ରୋତୃମଣ୍ଡଳ ଭିତରେ ଉପସ୍ଥିତ ରହିବା ଆବଶ୍ୟକ । ନାରଦ ଯାଇ ବ୍ରହ୍ମାଙ୍କୁ ପ୍ରାର୍ଥନା କଲେ ।

ଶିବ ଗୀତ ଗାଇବାକୁ ରାଜି, ଏହା ଶୁଣି ବ୍ରହ୍ମାଙ୍କ ଆନନ୍ଦ କହିଲେ ନସରେ। ନାରଦ ଭାବିଲେ ଦୁଇଜଣଯାକ ସର୍ବୋତ୍ତମ ଶ୍ରୋତା ଉପସ୍ଥିତ ରହିଲେ ଭଲ ହେବ। ସେ ଯାଇ ବିଷ୍ଣୁଙ୍କୁ ପ୍ରାର୍ଥନା କଲେ। ଶିବ ଗାଇବେ ଶୁଣି ବିଷ୍ଣୁ ମଧ୍ୟ ପୁଲକିତ ହେଲେ।





ଶିବଙ୍କ ସମ୍ମୁଖରେ ଉପସ୍ଥିତ ହେଲେ ବ୍ରହ୍ମା, ବିଷ୍ଣୁ ଏବଂ ରାଗ ରାଗିଣୀର ଆତ୍ମ ରୂପ ଗନ୍ଧର୍ବଗଣ। ଯୁଗ ଯୁଗ ଧରି ଧ୍ୟାନମଗ୍ନ ଓ ନୀରବ ରହିଥିବା ମହାଦେବ ଅବଶେଷରେ ଗୀତ ବୋଲିବାକୁ ଆରମ୍ଭ କଲେ। ସେ ଗୀତର ମାଧୁର୍ଯ୍ୟ ଅବର୍ଣ୍ଣନୀୟ। ବିମୁଗ୍ଧ ଭାବରେ ସମସ୍ତେ ଶୁଣୁଥାନ୍ତି।

ସେ ଗୀତରୁ ପ୍ରେରଣା ପାଇ ଗନ୍ଧର୍ବ-ମାନେ ନୃତ୍ୟ କଲେ। ସେମାନଙ୍କର ସକଳ ଅଙ୍ଗ ପ୍ରତ୍ୟଙ୍ଗ ସ୍ଫୂର୍ତ୍ତି ହେଲା ସ୍ୱାଭାବିକ। ଆନନ୍ଦରେ ତଥା କୃତଜ୍ଞତା ଭରେ ସେମାନେ ବାରମ୍ବାର ଶିବଙ୍କୁ ତଥା ବ୍ରହ୍ମା ଓ ବିଷ୍ଣୁଙ୍କୁ ପ୍ରଣାମ କଲେ। ସେମାନଙ୍କ ଆନନ୍ଦରେ ମହାଦେବ ମଧ୍ୟ ପ୍ରୀତ ହେଲେ।





ଶିବଙ୍କ ସଙ୍ଗୀତର ଲହରୀ ବ୍ୟାପିଯାଇ ପ୍ରକୃତିକୁ କଲା ସବୁଜ ଓ ସୁଷମମୟ । ସ୍ୱର୍ଗ ଓ ମର୍ତ୍ତ୍ୟର ବାତାବରଣରେ ଅଭୂତପୂର୍ବ ଶିହରଣ ଖେଳିଗଲା । ପଶୁପକ୍ଷୀ, ଦେବମାନବ, ସଭିଙ୍କ ହୃଦୟରେ ହେଲା ପୁଲକର ସଞ୍ଚାର ।

ତହୁଁ ସଙ୍ଗେ ସଙ୍ଗେ ଗୋଟାଏ ଅପ୍ରତ୍ୟାଶିତ ଘଟଣା ଘଟିଲା । ସେ ସଙ୍ଗୀତର ଲହରୀ ସହ ବିଷ୍ଣୁ ଏଭଳି ଏକାତ୍ମ ହୋଇଗଲେ ଯେ ତାଙ୍କ ଶ୍ରୀତନୁର ଏକ ପ୍ରସ୍ଥ ତରଳି ଯାଇ ଜଳବତ୍ ବୋହି ଯିବାକୁ ଲାଗିଲା । କେବଳ ବ୍ରହ୍ମା ତାହା ଲକ୍ଷ୍ୟ କରି ପାରିଲେ ।






ବ୍ରହ୍ମା କାଳ ବିଳମ୍ବ ନକରି ନୀରରୂପୀ ସେ ଦିବ୍ୟ ତନୁକୁ ନିଜ କମଣ୍ଡଳୁରେ ରଖିନେଲେ । ଏହି ନୀରହିଁ ପରବର୍ତ୍ତୀ କାଳରେ ହେବ ଗଙ୍ଗାର ଉତ୍ସ । ବିଷ୍ଣୁଙ୍କ ତନୁରୁ ସମ୍ଭୂତ ବୋଲି ଗଙ୍ଗା ଏତେ ପବିତ୍ର ।

(ଆଗାମୀ ସଂଖ୍ୟାରେ : ଗଙ୍ଗାବତରଣ)

# ଜ୍ଞାନୋଦୟ

ଚମ୍ପାଗଡ଼ା ନଗରୀର ରାଜାଙ୍କ ନାମ ଥିଲା କୀର୍ତ୍ତିସେନ, ସେ ଥିଲେ ଯୁବକ । କିନ୍ତୁ ହଠାତ୍ ମୃତ୍ୟୁ ଭୟରେ ସେ ବିଚଳିତ ହୋଇ ଚିନ୍ତାଗ୍ରସ୍ତ ହୋଇ ପଡ଼ିଲେ । କୌଣସି ବ୍ୟକ୍ତି ତାଙ୍କର ଚିନ୍ତା ଦୂର କରି ପାରିଲେ ନାହିଁ । ଶେଷରେ ମନ୍ତ୍ରୀ ଧର୍ମଶର୍ମା ତାଙ୍କୁ କହିଲେ କି ସେ ଯାଇ ଋଷି ଜ୍ଞାନାନନ୍ଦଙ୍କ ସହିତ ଏ ବିଷୟରେ ଆଲୋଚନା କରନ୍ତୁ ।

କୀର୍ତ୍ତିସେନ୍ ମନ୍ତ୍ରୀଙ୍କ କଥା ମାନି ଦିନେ ଜ୍ଞାନାନନ୍ଦଙ୍କ ପାଖକୁ ଯାଇ ସବୁ କଥା ଜଣାଇଲେ । ଜ୍ଞାନାନନ୍ଦ ହସି ହସି କହିଲେ, "ମହାରାଜ, ମଣିଷ ଦିନେ ନା ଦିନେ ମୃତ୍ୟୁ ମୁଖରେ ପଡ଼ିବ । କିନ୍ତୁ ଆପଣ ଏବେ ଯୁବକ ବୋଲି ମୃତ୍ୟୁର କରାଳ ରୂପକୁ କଳ୍ପନା କରି ଚିନ୍ତାଗ୍ରସ୍ତ ହୋଇ ପଡ଼ୁଛନ୍ତି । ଦେଖନ୍ତୁ, ଆପଣଙ୍କର ଏ ଯୌବନ ମଧ୍ୟ କାଳକ୍ରମେ ବାର୍ଦ୍ଧକ୍ୟରେ ପରିଣତ ହେବ । ସେତେବେଳେ ବାର୍ଦ୍ଧକ୍ୟଜନିତ କଷ୍ଟରୁ ରାହା ପାଇବା ପାଇଁ ଆପଣହିଁ ମୃତ୍ୟୁକୁ ଇଚ୍ଛା କରିବେ । ସେତେବେଳେ ଦାନ୍ତ ପଡ଼ିଯିବ, ଆଖିକୁ ଦେଖା ଯିବନାହିଁ, ଉଠି ପାରିବେ ନାହିଁ, ଏପରି ଶରୀରକୁ ନେଇ ବେଶିଦିନ ବଞ୍ଚିବାକୁ କେହି ଇଚ୍ଛା କରିବ ନାହିଁ । ତେଣୁ ବାର୍ଦ୍ଧକ୍ୟ ଅବସ୍ଥାହିଁ ମୃତ୍ୟୁ ପାଇଁ ମନ ଭିତରେ ପ୍ରସ୍ତୁତି ଆଣି ଦେବ । ଏବେଠାରୁ ସେ ବିଷୟରେ କିଛି ଚିନ୍ତା କରନ୍ତୁ ନାହିଁ ।"

ଜ୍ଞାନାନନ୍ଦଙ୍କ ଉପଦେଶ ପାଇଁ ରାଜାଙ୍କର ଚିନ୍ତା ଦୂର ହେଲା ଓ ସେ ଖୁସି ମନରେ ରାଜ୍ୟକୁ ଲେଉଟିଲେ ।





# ଯୋଗ୍ୟତା

ଜୟଗଡ଼ର ରାଜା ଚନ୍ଦ୍ରଚୂଡ଼ଙ୍କ ଦରବାରରେ ଅନେକ ବିଦ୍ୱାନ ଥିଲେ । ସେମାନଙ୍କ ମଧ୍ୟରୁ ଗୌରାଙ୍ଗ ଓ ଗମ୍ଭୀର ନାମକ ଦୁଇଜଣ କବି ଥିଲେ । ଗୌରାଙ୍ଗ ଅନେକ କାବ୍ୟ ଲେଖି 'ମହାକବି' ଉପାଧି ଲାଭ କରିଥିଲେ । କିନ୍ତୁ ଗମ୍ଭୀର ଥିଲେ ଯୁବକ । ତଥାପି ତାଙ୍କର କାବ୍ୟ ସବୁ ଲୋକପ୍ରିୟତା ଅର୍ଜନ କରିଥିଲା । ତାଙ୍କର ରସଜ୍ଞାନ ଥିଲା ବହୁତ ବେଶି ।

ସାହିତ୍ୟପ୍ରେମୀ ରାଜା ଚନ୍ଦ୍ରଚୂଡ଼ଙ୍କ ଦରବାରକୁ ଅନେକ କବି, ଲେଖକ ଯିବା ଆସିବା କରୁଥା'ନ୍ତି । ସେମାନଙ୍କର ଯୋଗ୍ୟତା ଦେଖି ଉପଯୁକ୍ତ ପୁରସ୍କାର ଦେବା ପାଇଁ ରାଜା ଜଣେ ବିଦ୍ୱାନଙ୍କୁ ଖୋଜୁଥାନ୍ତି । ସେହି ପଦ ପାଇଁ କିଏ ସର୍ବାପେକ୍ଷା ଯୋଗ୍ୟ ସେକଥା ବିଚାର କରିବା ପାଇଁ ରାଜା ମନ୍ତ୍ରୀଙ୍କୁ ମଧ୍ୟ ଅନୁରୋଧ କରିଥିଲେ । ମନ୍ତ୍ରୀ ମିହିରଶର୍ମା ଏହି ସମସ୍ୟାଟି ଶୁଣିବା ମାତ୍ରେ କହିଲେ, "ମହାରାଜ, ଦରବାରରେ ମହାକବି ଗୌରାଙ୍ଗଙ୍କ ପରି ଯୋଗ୍ୟ ବ୍ୟକ୍ତି ଥାଉଁ ଥାଉଁ ଆପଣ ଅନ୍ୟକଥା ଭାବୁଛନ୍ତି ବା କାହିଁକି ? ସେହି ବିଶିଷ୍ଟ ପଦରେ ତାଙ୍କୁହିଁ ନିଯୁକ୍ତ କରନ୍ତୁ । ଆବଶ୍ୟକତା ଅନୁସାରେ ସେ ଆପଣଙ୍କୁ ଉଚିତ୍ ପରାମର୍ଶ ଦେବେ ।"

ମନ୍ତ୍ରୀଙ୍କ କଥା ଶୁଣି ରାଜା ଚୁପ୍ ରହିଲେ । କିଛିଦିନ ପରେ ଭୂଷଣ ନାମକ ଜଣେ କବି ଆସି ପହଞ୍ଚିଲେ । ସେ ରାଜାଙ୍କୁ ଦେଖା କରି କହିଲେ, "ମହାରାଜ, ମୁଁ ମୋର ପ୍ରଥମ କୃତି କାବ୍ୟଟିକୁ ଆପଣଙ୍କୁ ସମର୍ପଣ କରିବାକୁ ବହୁ ଦୂରରୁ ସାଥିରେ ନେଇ ଆସିଛି ।"

ରାଜା କବିଙ୍କଠାରୁ କାବ୍ୟଟିକୁ ଗ୍ରହଣ କଲେ ଓ କର୍ମଚାରୀମାନଙ୍କୁ ନିର୍ଦ୍ଦେଶ ଦେଲେ ତାଙ୍କର ରହିବାର ବ୍ୟବସ୍ଥା କରିବାକୁ । ପରେ ରାଜା ମହାକବି ଗୌରାଙ୍ଗଙ୍କୁ ଡାକି କହିଲେ, "କବି

ସୁରେନ୍ଦ୍ର

ଗୌରାଙ୍ଗ, ନିଅ ଏହି ନୂତନ କବିଙ୍କର ଲେଖାଟି ପଢ଼ି ତୁମର ମତାମତ ଦିଅ ।"

ପରଦିନ ଗୌରାଙ୍ଗ ରାଜାଙ୍କୁ କାବ୍ୟଟି ଦେଇ କହିଲେ, "ମହାରାଜ, ଏଇଟି ତାଙ୍କର ପ୍ରଥମ ଲେଖା । ତେଣୁ ମୁଁ ତାକୁ ତନ୍ନ ତନ୍ନ କରି ପଢ଼ିଲି । ହେଲେ କାହିଁ କିଛି ଦୋଷ ତ୍ରୁଟି ଦେଖିପାରିଲି ନାହିଁ ।"

ଗୌରାଙ୍ଗ ଚାଲିଯିବା ପରେ ରାଜା କବି ଗମ୍ଭୀରଙ୍କୁ ଡାକି କାବ୍ୟଟି ଦେଇ କହିଲେ, "କବି ଗମ୍ଭୀର, ଦେଖ ଏଇଟି ଭୂଷଣଙ୍କର ପ୍ରଥମ କୃତି । ପଢ଼, ବିଚାର କରି ତୁମର ମତାମତ ଦିଅ ।"

ଦୁଇଦିନ ପରେ କବି ଗମ୍ଭୀର ରାଜାଙ୍କୁ ଭେଟି କାବ୍ୟଟି ଦେଲେ ଓ କହିଲେ, "ମହାରାଜ, ଏହି କାବ୍ୟଟି ନୂଆ ଲେଖା ହେଲେ ମଧ୍ୟ ଏଥିରେ ଏପରି କିଛି କାବ୍ୟରସ ପ୍ରକାଶ ପାଇଛି ଯାହା ଅତ୍ୟନ୍ତ ପ୍ରଶଂସନୀୟ ।"

ତା'ପରେ ରାଜା ମନ୍ତ୍ରୀଙ୍କୁ ଡାକି କହିଲେ, "କୌଣସି ବିଦ୍ୟାର ନିର୍ଣ୍ଣୟ କରିବା ପାଇଁ ମୋର ଜଣେ ବିଦ୍ୱାନଙ୍କର ଆବଶ୍ୟକତା ଥିଲା । ମୁଁ ସେହି ପଦପାଇଁ କବି ଗମ୍ଭୀରଙ୍କୁ ଯୋଗ୍ୟ ମନେ କରୁଛି । ତମେ ସେହି ଅନୁସାରେ କାର୍ଯ୍ୟକ୍ରମ ଠିକ୍ କର ।"

ମନ୍ତ୍ରୀ ବହୁତ ଆଶ୍ଚର୍ଯ୍ୟ ହେଲେ ଓ କହିଲେ, "ମହାରାଜ, ଆପଣଙ୍କ ପରାମର୍ଶଦାତା ହେବା ପାଇଁ ଗୌରାଙ୍ଗ ଥାଉ ଥାଉ ଏହି ଯୁବକ କବି ଗମ୍ଭୀରଙ୍କୁ କିପରି ବାଛିଲେ ? ସେଥିରେ



ଗୌରାଙ୍ଗଙ୍କର ମନ ଦୁଃଖ ହେବ । ଏହା ପଛରେ କି କାରଣ ଥାଇପାରେ ?"

ରାଜା କହିଲେ, "କବି ଭୂଷଣଙ୍କର କାବ୍ୟକୃତି ଉପରେ ଦୁହିଁଙ୍କର ବିଚାର ତମେ ତ ଶୁଣିଛ । ମୁଁ ମଧ୍ୟ ସେହି ବିଚାରକୁ ଶୁଣି କବି ଗମ୍ଭୀରକୁ ଏହି ପଦ ପାଇଁ ବିଶେଷ ଭାବରେ ଯୋଗ୍ୟ ବୋଲି ଭାବୁଛି । କାରଣ ଦରବାରକୁ ଅସଂଖ୍ୟ କବି, ଲେଖକ ଆସୁଛନ୍ତି । ସେମାନଙ୍କର ଭଲ ମନ୍ଦ ଦେଖି ପ୍ରକୃତ ବିଚାର କରିବା ଆମର ଧର୍ମ । ଏହି ଦୁହିଁଙ୍କ ମଧ୍ୟରୁ କବି ଗୌରାଙ୍ଗଙ୍କର ଦୃଷ୍ଟିକୋଣ ଦୋଷ ଦେଖିବା ଅଥଚ କବି ଗମ୍ଭୀରଙ୍କର ଦୃଷ୍ଟିକୋଣ ହେଉଛି ଗୁଣ ଦେଖିବା । ଯଦି ଗୌରାଙ୍ଗଙ୍କୁ ବିଚାର କରିବାର ଦାୟିତ୍ୱ ଦିଆଯାଏ, ତେବେ ରାଜାଶ୍ରୟ ପ୍ରାର୍ଥୀ କବିମାନେ ନିଜ ନିଜର ତ୍ରୁଟି ଯୋଗୁ ନିରାଶ ହୋଇ ଫେରିବେ । ବିପରୀତ ଭାବରେ ଦେଖିଲେ କବି ଗମ୍ଭୀର ନୂତନ ଲେଖକଙ୍କର ଗୁଣଗୁଡ଼ିକର ଆଦର କରୁଛନ୍ତି ଓ ବିଶେଷ ବିଚାରକୁ ଆଣୁଛନ୍ତି । ତେଣୁ ଆଗନ୍ତୁକ ଲେଖକମାନେ ପୁରସ୍କୃତ ହେବା ସଙ୍ଗେ ସଙ୍ଗେ ଅଧିକରୁ ଅଧିକ କବି ଓ ବିଦ୍ୱାନ ମାନଙ୍କର ଏହି ରାଜ୍ୟରେ ସମାଗମ ହେବ । ତେଣୁ ଆମ ଦରବାର ପାଇଁ ଯେଉଁ ପରାମର୍ଶ-ଦାତା ବିଦ୍ୱାନଙ୍କୁ ମୁଁ ଖୋଜିଥିଲି ସେ ହେଲେ କବି ଗମ୍ଭୀର ।"

ରାଜାଙ୍କ ବିଚାର ଶୁଣି ମନ୍ତ୍ରୀ ଭଲ ଭାବରେ ସବୁ ବୁଝିଗଲେ ଓ ରାଜାଙ୍କ ନିର୍ଣ୍ଣୟ ସ୍ୱୀକାର କଲେ । ବାସ୍ତବିକ, ଦୁଇ ଦୃଷ୍ଟିକୋଣରେ ବହୁତ ପାର୍ଥକ୍ୟ ଥିଲା । ଜଣେ ଖାଲି କ'ଣ ନାହିଁ, ତାହା ଦର୍ଶାଇଲା । ଆଉ ଜଣେ ଦର୍ଶାଇଲା କ'ଣ ଅଛି । ମନ୍ତ୍ରୀ ଖୁସି ହେଲେ । କବି ଗମ୍ଭୀରଙ୍କୁ ସେହି ବିଶିଷ୍ଟ ପଦରେ ନିଯୁକ୍ତ କରାଗଲା । ତାଙ୍କ ସମୟରେ ଅନେକ ପଣ୍ଡିତ, ଲେଖକ ଓ ଜ୍ଞାନୀମାନଙ୍କର ସମାଗମ ହେଲା । ସେ ନିଜେ ମଧ୍ୟ ଜଣେ ବିବେକଶୀଳ ବ୍ୟକ୍ତି ଭାବରେ ପ୍ରସିଦ୍ଧି ଲାଭ କଲେ ।





# ଆତ୍ମସ୍ତୁତି

ହେମପୁର ଗ୍ରାମରେ ନଗେନ୍ଦ୍ର, ତାଙ୍କ ସ୍ତ୍ରୀ ଲକ୍ଷ୍ମୀ ଓ ପୁଅ ଗୋବିନ୍ଦ ସହିତ ଥା'ନ୍ତି । ସମ୍ପତ୍ତିବାଡ଼ି ମଧ୍ୟ କିଛି ଥାଏ । ପରିବାରଟି ବଡ଼ ସୁଖରେ ଚଳୁଥା'ନ୍ତି ।

ପୁଅ କ୍ରମେ ବଡ଼ ହେଲା ଓ ତା'ପରେ ତା' ଭିତରେ ନାନା ପ୍ରକାର ବଦଭ୍ୟାସ ଦେଖାଦେଲା । ବିଶେଷତଃ ସେ କୁସଙ୍ଗମାନଙ୍କ ସହିତ ଆଡ୍ଡା ଦେଇ ଅନେକ ସମୟ କଟାଏ । ନିଜେ କିନ୍ତୁ ବୁଦ୍ଧିମାନ ଥିଲା ଓ ପଢ଼ାପଢ଼ିରେ ମଧ୍ୟ ଭଲ କରୁଥିଲା । ପୁଅର ଏସବୁ ବଦଭ୍ୟାସ ଦେଖି ବାପ ମା' ଅତ୍ୟନ୍ତ ଚିନ୍ତିତ ହୋଇ ପଡ଼ିଲେ ।

ଥରେ ଗୋବିନ୍ଦର ମାମୁଁ ସୁରେନ୍ଦ୍ର ହେମପୁର ଆସିଥା'ନ୍ତି । ସେ ଗୋବିନ୍ଦର ଏସବୁ ଢଙ୍ଗଢାଙ୍ଗ ଦେଖି ବହୁତ ଦୁଃଖିତ ହେଲେ ଓ ଭଉଣୀ ଭଣୋଇଙ୍କୁ ସେଥିପାଇଁ ଦୋଷାରୋପ କଲେ ।

ସେମାନେ କହିଲେ, "ଆମେ କ'ଣ କରିବୁ? ଯେତେ ବୁଝାଇଲେ କ'ଣ ହେବ, ସେ ତ କୌଣସି କଥା ଶୁଣୁନାହିଁ ।"

ଦିନେ ସୁରେନ୍ଦ୍ର ଗୋବିନ୍ଦକୁ ପାଖକୁ ଡାକି କହିଲେ, "ଦେଖ ପୁଅ, ତୋର ମୁହଁ ଉପରେହିଁ ତୋର ବାପ ମା' ତୋତେ ନିନ୍ଦା କରୁଛନ୍ତି । ତୋ ସାଙ୍ଗମାନେ ତତେ ପଛରେ ଥଟ୍ଟା କରି କହନ୍ତି । ଭାବିଲ୍ ଦେଖି ଏସବୁ କେତେ ବଡ଼ ଲଜ୍ଜାର କଥା !"

"ମାମୁଁ, ମୋ ସାଙ୍ଗମାନେ ତ ସେପରି ନୁହଁନ୍ତି !" ଗୋବିନ୍ଦ କହିଲା ।

"ଆଚ୍ଛା ତୁ ଗୋଟାଏ କାମ କର । ତୁ ସେମାନଙ୍କ ସାମନାରେ ନିଜର ପ୍ରଶଂସା କର । ଆଉ ନିଜର ବଡ଼ପଣ ସେମାନଙ୍କୁ ଦେଖା । ତା'ପରେ ଦେଖିବୁ ସେମାନଙ୍କର ପ୍ରକୃତ ରୂପ ।" ମାମୁଁ କହିଲେ ।

"ଜୁଗ୍ରବ"



ମାମୁଁଙ୍କ କଥା ମାନି ଗୋବିନ୍ଦ ସେହିପରି କଲା । ପ୍ରଥମେ ବନ୍ଧୁମାନେ ଭାବିଲେ, "ଏବେ ବୋଧେ ଆତ୍ମସ୍ତୁତି କରିବା ଗୋବିନ୍ଦର ସଉକ ହୋଇଯାଇଛି ।" କିନ୍ତୁ କିଛିଦିନ ପରେ ସେମାନେ ଚିଡ଼ିଗଲେ । ଦିନେ ସମସ୍ତେ ବସି ଗୋବିନ୍ଦକୁ କହିଲେ, "ଆରେ ତତେ ତ ଆମେ ପିଲାବେଳୁ ଜାଣିଛୁ । ତୁ ଆଜି କେତେ ବାହାଦୁରି ଆମ ଆଗରେ ତୋର ଦେଖାଇବୁ ?"

କିନ୍ତୁ ଗୋବିନ୍ଦର ଆତ୍ମସ୍ତୁତି କରିବା ଆଜିକାଲି ଅଭ୍ୟାସରେ ପଡ଼ିଗଲାଣି । ତେଣୁ ସେ କହିଲା, "ତମେ ବୋଧହୁଏ ଜାଣନାହିଁ ମୋର ବାପା, ମା', ମାମୁଁ ସବୁ ମୋତେ କେତେ ଆଦର କରନ୍ତି । ପ୍ରତ୍ୟେକ କଥାରେ ମୋତେ ପଚାରନ୍ତି ।"

ବନ୍ଧୁମାନେ ଦେଖିଲେ ଗୋବିନ୍ଦ ତା'ର ଆତ୍ମସ୍ତୁତିର ବଦଭ୍ୟାସ ଛାଡ଼ିବ ନାହିଁ । ତେଣୁ କ୍ରମେ ସେମାନେ ତା' ସହିତ ମିଳାମିଶା କରିବା ବନ୍ଦ କରିଦେଲେ । ମାସକ ଭିତରେ ପ୍ରାୟ ସମସ୍ତେ ତା'ଠାରୁ ଦୂରେଇ ଗଲେ । ଗୋବିନ୍ଦ ସବୁ ବୁଝିଗଲା ।

ଦିନେ ଗୋବିନ୍ଦ ମାମୁଁଙ୍କ ପାଖକୁ ଯାଇ କହିଲା, "ମାମୁଁ, ଆପଣଙ୍କ କଥା ସତ୍ୟ । ମୋର ସାଙ୍ଗମାନେ ଇର୍ଷାଳୁ । ମୋର ବଡ଼ପଣ କଥା କହିବାରୁ ସହ୍ୟ କରି ନପାରି ମୋ ସହିତ ବନ୍ଧୁତା ଛାଡ଼ିଦେଲେ । ଏବେ ମୋର କର୍ତ୍ତବ୍ୟ କ'ଣ କୁହନ୍ତୁ ।"

"ଏବେ ତୁ ତୋର ବାପ ମା'ଙ୍କ କଥା ମାନି ସେହି ଅନୁସାରେ ଚାଲିବୁ ।" ମାମୁଁ କହିଲେ ।

"ବାପ ମା' ଯେ ଦିନେ ମୋର ବନ୍ଧୁମାନଙ୍କ ପରି ନହେବେ ସେ କଥା କିଏ କହିପାରିବ ?" ଗୋବିନ୍ଦ କହିଲା ।

"ଥରେ ଆତ୍ମସ୍ତୁତି କରି ଦେଖ । ଦେଖିବୁ ସେମାନେ ସହିନେବେ । କିଛି କହିବେ ନାହିଁ ।" ମାମୁଁ କହିଲେ ।

ଏଣେ ଭଉଣୀ ଭଣୋଇଙ୍କୁ ସୁରେନ୍ଦ୍ର କହିଲେ କି ଗୋବିନ୍ଦ ଯେତେ ଆତ୍ମସ୍ତୁତି କରୁ ବା ଯାହା କହୁ ତମେ ମାନିଯିବ ।"

ତା'ପର ଦିନଠାରୁ ଗୋବିନ୍ଦ ସବୁବେଳେ ମା' ବାପାଙ୍କ ଆଗରେ ଆତ୍ମବିଜମା ଖୁବ୍ ଦେଖାଇ ଥାଏ। ସେମାନେ ବହୁତ ପ୍ରସନ୍ନତା ଓ ଆଦର ପୂର୍ବକ ସବୁ ଶୁଣୁଥା'ନ୍ତି। ଏସବୁ ଦେଖି ଗୋବିନ୍ଦର ମା' ବାପାଙ୍କ ପ୍ରତି ଅଧିକ ସମ୍ମାନ ଭାବ ଆସିଲା। ଭଣଜାର ଏପରି ପରିବର୍ତ୍ତନ ଦେଖି ତା' ମାମୁଁ ବହୁତ ଖୁସି ହେଲେ। ନିଜ ଘରକୁ ଫେରିଯିବା ପୂର୍ବରୁ ସେ ଥରେ ଗୋବିନ୍ଦକୁ ଡ଼ାକି କହିଲେ, "ଗୋବିନ୍ଦ, ଯିଏ ଯେତେ ନିଜର ହେଲେ ବି ଆତ୍ମସ୍ତୁତି ବାରବାର ଶୁଣିଲେ ବିରକ୍ତ ହୋଇଯିବେ। ତୁ ଏବେ ଗୋଟାଏ କାମ କର। ଯେତେ ସବୁ ବଡ଼ ବଡ଼ ସାହିତ୍ୟ ସମୟ ପାଇବା ମାତ୍ରେ ପଢ଼ାପଢ଼ି କର। ସେଥିରେ ମଧ୍ୟ କେତେ ପ୍ରକାର ସ୍ତୁତି ଦେଖି ପାରିବୁ। ଯେପରି ରାଜାଙ୍କୁ କପଟ ମନ୍ତ୍ରୀ ସ୍ତୁତି କରନ୍ତି, ବାପ ମା'ଙ୍କୁ କପଟ ପୁତ୍ର କରେ, ସ୍ୱାମୀଙ୍କୁ କପଟ ସ୍ତ୍ରୀ କରେ, ଭଗବାନଙ୍କୁ କପଟ ଭକ୍ତ କରେ। ତୁ ଏସବୁ ପ୍ରକାର ପ୍ରଶଂସାବାକ୍ୟ ମୁଖସ୍ଥ କରି ଦେ।"

ମାମୁଁଙ୍କ କଥା ଅନୁସାରେ ଗୋବିନ୍ଦ ବଡ଼ ବଡ଼ ସାହିତ୍ୟ ଓ ଗ୍ରନ୍ଥ ପଢ଼ିଲା। ଏସବୁ ଦେଖି ବାପ ମା' ଖୁବ୍ ଖୁସି ହେଲେ। କିନ୍ତୁ ଅଳ୍ପଦିନ ପରେ ସବୁବେଳେ ବାପ ମା'ଙ୍କର ସ୍ତୁତିବାକ୍ୟ ଓ ବନା କଥାରେ ପ୍ରଶଂସା କରିବାକୁ ଲାଗିଲା। ସେମାନଙ୍କ ପାଇଁ ସେଇଟା ଆଉ ଗୋଟାଏ



ସମସ୍ୟା ରୂପରେ ଦେଖାଦେଲା। ତେଣୁ ବାଧ୍ୟ ହୋଇ ସେମାନେ ଗୋବିନ୍ଦକୁ କହନ୍ତି: "ପୁଅ ଟିକିଏ ବାହାରେ ଯାଇ ବୁଲି ଆସ, ସ୍ୱାସ୍ଥ୍ୟ ଭଲ ରହିବ। ସବୁବେଳେ କାହିଁକି ଘରେ ପଶିଛୁ?"

ଦିନେ ଲକ୍ଷ୍ମୀ ନଗେନ୍ଦ୍ରଙ୍କୁ କହିଲେ, "ଶୁଣ, ଗୋବିନ୍ଦର ଏସବୁ ପ୍ରଶଂସା କରିବା ଅଭ୍ୟାସ ଏତେ ବଢ଼ୁଛି ଯେ ଶୁଣି ଶୁଣି ମୋତେ ବିରକ୍ତ ଲାଗିଲାଣି, ଏଥିପାଇଁ କିଛି ଉପାୟ କର।"

"ଏବେ ତ କିଛି ଉପାୟ ନାହିଁ। ବରଂ ଚାଲ୍ ତା' ପାଇଁ କନ୍ୟାଟିଏ ଠିକ୍ କରିଦେବା। ତେବେ ସବୁ ଗୋଳମାଳ ବୋଧୁ ସମ୍ଭାଳିବ।" ନଗେନ୍ଦ୍ର କହିଲେ।



ଏକଥା ସ୍ତ୍ରୀଙ୍କ ମନକୁ ପାଇଲା । ଏବେ ଗୋବିନ୍ଦର ବିବାହ ପାଇଁ ସବୁ ପ୍ରକାର ପ୍ରସ୍ତୁତି ଚାଲିଲା । ହେଲେ ଗୋବିନ୍ଦର ଆତ୍ମସ୍ତୁତିଜନିତ ବଦନାମ ଥିବାରୁ କେହି ତାକୁ ଝିଅ ଦେବାକୁ ମଙ୍ଗିଲେ ନାହିଁ ।

ଏପରି ସମୟରେ ପୁଣି ମାମୁଁ ସୁରେନ୍ଦ୍ର ଆସି ପହଞ୍ଚିଲେ । ତାଙ୍କୁ ଲକ୍ଷ୍ମୀ ସବୁକଥା କହିବାରୁ ସେ କହିଲେ, "ଆମ ଗାଁରେ ମୋର ଜଣେ ବନ୍ଧୁର ଝିଅ ଅଛି । ବହୁତ ଭଲ ଝିଅ! ସେଇଠି ମୁଁ ପ୍ରସ୍ତାବ ପକାଇବି ।"

ଝିଅଟି ବିଷୟରେ ଆଗରୁ ଏମାନେ ଶୁଣିଥିଲେ । ଝିଅଟି ରୂପ ଗୁଣରେ ଅତ୍ୟନ୍ତ ଭଲ । କେବଳ ଗୋଟିଏ ଦୋଷ ଥିଲା । ଭଗବାନ-ବିଶ୍ୱାସ ତା'ର ଖୁବ୍ ବେଶି ନଥିଲା । ତେଣୁ ପୂଜା, ଉପବାସ ଓ ଜପତପ କରିବା ସେ ନିରର୍ଥକ ମଣୁଥିଲା । କିନ୍ତୁ ବାପ ମା' ସେହି ପ୍ରସ୍ତାବରେହିଁ ରାଜି ହେଲେ ।

ଗୋବିନ୍ଦର ବାହାଘର ରାଧା ସହିତ ହୋଇଗଲା । ଏବେ ସମଗ୍ର ସମସ୍ୟା ରାଧା ଉପରେ ଆସି ପଡ଼ିଲା । ସର୍ବଦାହିଁ ଗୋବିନ୍ଦ ରାଧାର ପ୍ରଶଂସା କରିବାରେ ଲାଗିଲା ।

ରାଧା ଦେଖିଲା ଶାଶୁଘରେ ସବୁ ଭଲ କେବଳ ଗୋବିନ୍ଦର ଏଇ ବଦଭ୍ୟାସ ଛଡ଼ା । ସେଥିରୁ ମୁକ୍ତି ପାଇବାକୁ ସେ ଏଣିକି ପୂଜା ଅର୍ଚ୍ଚନା କାର୍ଯ୍ୟରେ ଲାଗି ରହିଲା । କ୍ରମେ ସେ ଭଗବାନ୍-ବିଶ୍ୱାସୀ ହୋଇଗଲା । ନଗେନ୍ଦ୍ର ଓ ଲକ୍ଷ୍ମୀ, ବୋହୂର ପରିବର୍ତ୍ତନ ଦେଖି ଖୁସି ହୋଇଗଲେ ଓ ରାଧାର ବାପାଙ୍କ ପାଖକୁ ମଧ୍ୟ ଏ ଖବର ପଠାଇଲେ ।

ରାଧାର ବାପା ନିଶିକାନ୍ତ ଏ ଖବର ପାଇ ଖୁସି ହେଲେ । କିନ୍ତୁ ଏତେ ଶୀଘ୍ର ବିଶ୍ୱାସ କଲେ ନାହିଁ । ତେଣୁ ଝିଅକୁ ଦେଖିବାକୁ ସେ ଥରେ ଝିଅର ଶାଶୁଘରକୁ ଆସିଲେ । ରାଧା ମଧ୍ୟ ତା'ର ବାପାଙ୍କୁ ସମସ୍ତ କଥା କହିଲା । ଏବେ ସେ ବୁଝିଲେ ରାଧାର ପରିବର୍ତ୍ତନ ହେବା ଭିତର କଥା । ରାଧାର ପରିବର୍ତ୍ତନରେ ସେ ଖୁସି ହେଲେ ସତ, କିନ୍ତୁ ଜ୍ୱାଇଁର ସ୍ତୁତିବାକ୍ୟ କହିବାର ବଦଭ୍ୟାସ ଶୁଣି ଚିନ୍ତିତ

ହେଲେ । ଏ ବିଷୟରେ ସେ ସୁରେନ୍ଦ୍ରଙ୍କ ସହିତ ଏକାନ୍ତରେ ଆଲୋଚନା କଲେ ।

ଦିନେ ନଈକୂଳକୁ ବୁଲିଯିବା ବାହାନାରେ ନିଶିକାନ୍ତ ଗୋବିନ୍ଦ ସହିତ ବାହାରକୁ ଗଲେ । ବୁଲି ବୁଲି ସେ କହିଲେ, "ଦେଖ, ଗୋବିନ୍ଦ, ତମେ ଗୁଡ଼ାଏ ବାଜେ ପିଲାଙ୍କ ସହିତ ସମୟ କଟାଉଥିଲ ବୋଲି ତୁମ ମାମୁଁ ତୁମକୁ ଆତ୍ମସ୍ତୁତି ଶିଖାଇଲେ । କାରଣ ତଦ୍ୱାରା ସେମାନେ ବିରକ୍ତ ହେବେ ଓ ତୁମଠାରୁ ଦୂରେଇ ଯିବେ । କିନ୍ତୁ ଏବେ ଦେଖାଯାଉଛି ତୁମେ ତ ତାକୁ ଅଭ୍ୟାସରେ ପକାଇ ଦେଇଛ । ପୁଣି ବାପ ମା' ଓ ସ୍ତ୍ରୀ ସମସ୍ତଙ୍କୁ ବିନା କାରଣରେ ପ୍ରଶଂସା ବାକ୍ୟ ବାରମ୍ବାର କହିଲେ ସେମାନେ ମଧ୍ୟ କାମ ବାହାନାରେ ତୁମଠାରୁ ଦୂରେଇ ରହୁଛନ୍ତି ।"

"ମୋର ଏସବୁ ଏତେ ଅଭ୍ୟାସରେ ପଡ଼ିଗଲାଣି ଯେ ଛାଡ଼ିବା କଷ୍ଟ । ଏବେ ଛାଡ଼ିବାର ଉପାୟ କୁହନ୍ତୁ ।" ଗୋବିନ୍ଦ ନିଶିକାନ୍ତଙ୍କୁ କହିଲା ।

ନିଶିକାନ୍ତ କହିଲେ, "ତେବେ ଶୁଣ, ଏବେ ତମେ ସମସ୍ତଙ୍କୁ ପ୍ରଶଂସା କର । ଯାହା ସହିତ କଥା କହିବ ତା'ର ପ୍ରଶଂସା କରିବ । ଦେଖ ଫଳ କ'ଣ ହେଉଛି ।" ନିଶିକାନ୍ତ କହିଲେ ।

ସେହିଦିନଠୁ ଗୋବିନ୍ଦ ସେଇଆ କଲା । ଫଳରେ ସବୁ ଲୋକ ଖୁସି ହୋଇ ତା' ସହିତ ବନ୍ଧୁତା କରି ଅଯଥା ସମୟ ନଷ୍ଟ କଲେ । ଏବେ ଗୋବିନ୍ଦ ଆତ୍ମସ୍ତୁତି ଓ ପରସ୍ତୁତି ଦୁଇଟାର ନିରର୍ଥକତା ନିଜେ ହୃଦୟଙ୍ଗମ କଲା । ତେଣୁ ସେ ଦୁଇଟାଯାକ ଅଭ୍ୟାସ କ୍ରମେ ଛାଡ଼ି ଦେଲା; କାମଦାମ ଓ ପଢ଼ାପଢ଼ିରେ ବିଶେଷ ମନଯୋଗ ଦେଲା ।

ଅଳ୍ପ ଦିନରେ ସେ ସବୁଥିରେ ସାଫଲ୍ୟ ଲାଭ କଲା । ଅନ୍ୟମାନଙ୍କୁ ଦରକାର ପଡ଼ିଲେ ସାହାଯ୍ୟ କରେ । ଏମିତ ଆଗରୁ ତ ବୁଦ୍ଧିମାନ ଥିଲା । ତଦ୍ୱାରା ସମସ୍ତେ ତାକୁ ସ୍ନେହ, ସୌହାର୍ଦ୍ୟ ଦେଖାଇଲେ । ଏବେ ଗ୍ରାମରେ ସେ ଏକ ବିଶେଷ ବ୍ୟକ୍ତି ଭାବରେ ଗଣ୍ୟ ହେଲା ।






# ଯୋଗ୍ୟ ପତ୍ନୀ

ମଣିପୁର ଗ୍ରାମରେ ଖୁସିରାମ ନାମରେ ଗୃହସ୍ଥଟିଏ ଥାଏ । ତା' ସ୍ତ୍ରୀର ନାମ ସୁଶୀଳା, ପ୍ରକୃତରେ ସ୍ୱଭାବରେ ସେ ଅତ୍ୟନ୍ତ ଭଲ ଥିଲା । ସ୍ୱାମୀ ଯାହା କଲେ ମଧ୍ୟ ସେ କେବେ ତା' ଉପରେ ରାଗୁ ନଥାଏ । ସେମାନଙ୍କର ଜମିଜମା କିଛି ଥାଏ ଓ ଦୁଇଟି ଦୁହାଁଳୀ ଗାଈ ମଧ୍ୟ ଥା'ନ୍ତି । ଭଲରେ ଚଳୁଥା'ନ୍ତି । ଦିନେ ସୁଶୀଳା ଖୁସିରାମକୁ କହିଲା, "ଦେଖ, ଦୁଇଟି ଗାଈଙ୍କୁ ପୋଷିବା କଷ୍ଟ; ଏତେ ଦୁଧଦହି ଆମର ହେବ କ'ଣ ? ଗୋଟିଏ ଥାଉ, ଅନ୍ୟଟି ହାଟରେ ନେଇ ବିକିଦେଇ ଆସ ।"

ସ୍ତ୍ରୀର କଥାରେ ଖୁସିରାମ ରାଜି ହୋଇଗଲା ଓ ଦିନେ ଗାଈଟିକୁ ନେଇ ହାଟକୁ ଗଲା । ହାଟରେ ବହୁ ସମୟ ଧରି ଠିଆ ହୋଇ ରହିଲେ ମଧ୍ୟ କେହି ଗାଈ କିଣିବାକୁ ଆସିଲେ ନାହିଁ । ତେଣୁ ସେ ବାଧ୍ୟ ହୋଇ ଗାଈଟିକୁ ଧରି ଘରକୁ ଫେରିଲା ।

ରାସ୍ତାରେ ଜଣେ ଘୋଡ଼ସବାର ସହିତ ତାହାର ଦେଖା ହେଲା । ତା' ସହିତ କିଛି କଥାବାର୍ତ୍ତା କରିବା ପରେ ଘୋଡ଼ାଟି ସହିତ ଗାଈଟିର ବଦଳକରି ଘୋଡ଼ାଟିକୁ ନେଇ ଫେରୁଛି । ରାସ୍ତାରେ ଜଣେ ଲୋକ ଛେଳିଟିଏ ନେଇ ଯାଉଛି । ଖୁସିରାମ ତାକୁ ଘୋଡ଼ାଟି ଦେଇ ତା' ସହିତ କିଛି କଥାବାର୍ତ୍ତା ହୋଇ ତା'ଠୁ ଛେଳିଟି ନେଇ ପୁଣି ଗ୍ରାମ ଅଭିମୁଖରେ ଚାଲିଲା । କିଛିଦୂର ଯିବା ପରେ ଦେଖିଲା ଜଣେ ବତକଟିଏ ନେଇ ଯାଉଛି । ଖୁସିରାମ ତାହା ସହିତ କିଛି କଥାବାର୍ତ୍ତା କରି ତାକୁ ଛେଳିଟି ଦେଇ ତା'ଠାରୁ ବତକଟି ନେଇ ଘରକୁ ଚାଲିଲା । ଘର ଆହୁରି ଅନେକ ଦୂର ଅଛି । ଖୁସିରାମ ଚାଲିଥାଏ ଦେଖିଲା

ପଚଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ

ଜଣେ କୁକୁଡ଼ାଟିଏ ଧରି ଚାଲିଛି। ତାକୁ ଦେଖି ସେଇଟି ନେବାପାଇଁ ମନ ହାଉଁପାଉଁ ହେବାରୁ ସେ ବଳଦଟିକୁ ବଦଳ ଦେଇ କୁକୁଡ଼ାଟି ଧରି ଚାଲିଲା।

କୁକୁଡ଼ାଟିକୁ ଧରି କିଛି ବାଟ ଯାଇ ଯାଇ ଜାଣିଲା ତା' ପେଟ ଭୋକରେ ଆଉଟି ହେଉଛି। ତେଣୁ ନିକଟସ୍ଥ ଜଣେ ଚାଷୀର ଘରକୁ ଯାଇ କୁକୁଡ଼ାଟି ତାକୁ ଦେଇ ପେଟଭରି ଖାଇଲା ଓ ଆସ୍ତେ ଆସ୍ତେ ଚାଲି ଚାଲି ଘରକୁ ଫେରିଲା।

ଗ୍ରାମରେ ପହଞ୍ଚିବା ମାତ୍ରେ ଖୁସିରାମର ସାଥି ମଙ୍ଗଳ ସହିତ ଦେଖା ହେଲା। ମଙ୍ଗଳ କହିଲା, "ହାଟରୁ କ'ଣ କ'ଣ ସଉଦା ଆଣିଲ?"

ଖୁସିରାମ ମଙ୍ଗଳକୁ ମୂଳରୁ ଶେଷ ପର୍ଯ୍ୟନ୍ତ ଯାହା ଘଟିଥିଲା ସବୁ କହିଲା ଓ ପଚାରିଲା, "ମୁଁ ଯାହା କରିଛି ଭଲ କରିଛି, ନୁହେଁ?"

"ତମେ ତ ଭଲ କରିଛ କହୁଛ। ଏବେ ଘରକୁ ଯାଇ ସ୍ତ୍ରୀକୁ ସବୁ କଥା କୁହ, ଗୃହିଣୀ ପାହାର ଛଡ଼ା ତୁମ ଭାଗ୍ୟରେ ଆଉ କିଛି ନାହିଁ।" ମଙ୍ଗଳ କହିଲା।

"ତମେ ବୋଧେ ମୋ ସ୍ତ୍ରୀକୁ ଜାଣିନାହଁ। ସେ ଝଗଡ଼ା କରିବା ଲୋକ ନୁହେଁ।" ଖୁସିରାମ କହିଲା।

"ସ୍ତ୍ରୀ ଯେତେ ଭଲ ହେଲେ ମଧ୍ୟ ତମେ ଆଜି ଯାହା କାର୍ଯ୍ୟ କରିଛ ସେଥିରେ ସେ ନିଶ୍ଚେ ରାଗିବ ଏମିତିକି ତମକୁ ଛାଡ଼ି ମଧ୍ୟ ଚାଲିଯାଇ ପାରେ।" ମଙ୍ଗଳ କହିଲା।




"ଆଚ୍ଛା ଏଇ ସର୍ତ୍ତ ରହିଲା ମୁଁ ମୋ ପତ୍ନୀଠାରୁ ଗାଳି ଖାଇଲେ ମୁଁ ଶହେଟଙ୍କା ଦେବି ନ ଖାଇଲେ ତମେ ଶହେ ଟଙ୍କା ଦେବ। ରାଜି?" ଖୁସିରାମ କହିଲା।

"ନିଶ୍ଚୟ, ନିଶ୍ଚୟ, ଖୁସିରେ ରାଜି।" ମଙ୍ଗଳ କହିଲା।

"ଏବେ ଆସ, ଆମ ଘର ବାହାର ପିଣ୍ଡାରେ ଥାଇ ଶୁଣିବ ଆମ କଥାବାର୍ତ୍ତା।" ଖୁସିରାମ କହିଲା।

ଦୁହେଁ ଘରକୁ ଚାଲିଲେ। ବାହାର ପିଣ୍ଡାରେ ମଙ୍ଗଳ ବସି ରହିଲା। ଘର ଭିତରକୁ ଖୁସିରାମ ଯିବାମାତ୍ରେ ସୁଶୀଳା କହିଲା, "ଗାଈ କେତେ ଟଙ୍କାରେ ବିକିଲ?"

"ଆମ ଗାଈକୁ କେହି କିଣିଲେ ନାହିଁ; ତେଣୁ ଗାଈ ବଦଳରେ ଘୋଡ଼ାଟିଏ ଆଣିଲି ।" ଖୁସିରାମ କହିଲା ।

"ଭଲ ହେଲା ଏବେ ଗାଡ଼ିଟିଏ କିଣିଲେ ଯିବା ଆସିବାକୁ ସୁବିଧା ହେବ ।"

"ଘୋଡ଼ା କ'ଣ ଆଣିଛୁ କି ? ରାସ୍ତାରେ ସେଇଟି ବଦଳ ଦେଇ ଗୋଟିଏ ଛେଳି ଆଣିଲି ।" ଖୁସିରାମ କହିଲା ।

"ବହୁତ ଭଲ କରିଛ । ଘୋଡ଼ାକୁ ପୋଷିବାର ବହୁତ ଖର୍ଚ୍ଚ ହୁଏ । ଛେଳି ତ ଛୁଆ ଦେବ ।" ସୁଶୀଳା କହିଲା ।

"ଶୁଣ, ଛେଳିଟିକୁ ବାଟରେ ବଦଳ ଦେଇ ବତକଟିଏ ଆଣିଲି ।" ଖୁସିରାମ କହିଲା ।

"ବାଃ ବହୁତ ଭଲ । ଛେଳି ପଛରେ କିଏ ଏବେ ଦୌଡ଼ନ୍ତା ? ବତକଟି ତ ଅଣ୍ଡା ଦେବ ।" ସୁଶୀଳା କହିଲା ।

"ଆରେ ଶୁଣ, ମୁଁ ବତକକୁ ବଦଳ ଦେଇ କୁକୁଡ଼ାଟିଏ ଆଣିଲି ।" ଖୁସିରାମ କହିଲା ।

"ମୁଁ ତ କହିବାକୁ ଯାଉଥିଲି କୁକୁଡ଼ା ନ ଆଣି ବତକ କାହିଁକି ଆଣିଲ ! କୁକୁଡ଼ାଟିଏ ଥିଲେ ସକାଳୁ ରଡି କରି ଉଠାଇ ଦେବ ।" ସୁଶୀଳା କହିଲା ।

"ଶୁଣ, କଥା କ'ଣ କି ମୋତେ ଭୋକ ଲାଗିବାରୁ ସେଇଟି ଦେଇ ଜଣକ ଘରେ ପେଟ ଭରି ଖାଇନେଲି ।" ଖୁସିରାମ କହିଲା ।

"ଭଲ କରିଛ । ଜୀବନ ବଡ଼ ନା କୁକୁଡ଼ା ବଡ଼ ?" ସୁଶୀଳା କହିଲା ।

ଏବେ ଖୁସିରାମ ବାହାରକୁ ଆସି ମଙ୍ଗଳକୁ ଦେଖାକରି କହିଲା, "ବନ୍ଧୁ, ଏବେ ଆମ କଥାବାର୍ତ୍ତା ତମେ ଶୁଣିଛ ଆଶାକରେ ।"

"ହଁ, ହଁ ଶୁଣିଛି । ଭଲକରି ଶୁଣିଛି । ଏବେ ମୋ ଘରକୁ ଆସ । ସର୍ତ୍ତର ଶହେ ଟଙ୍କା ନେଇ ଆସିବ ।" ମଙ୍ଗଳ କହିଲା ।

ସୁଶୀଳାର ଭଲ ସ୍ୱଭାବ ଯୋଗୁ ଖୁସିରାମ ଗାଈ ପାଇଁ ଷାଠିଏ ଟଙ୍କା ପାଇବା ବଦଳରେ ସର୍ତ୍ତରେ ଜିତି ଶହେ ଟଙ୍କା ପାଇଲା ।





# ଶିବ ପୁରାଣ

ରାଜା ଅନରଣ୍ୟ ନିଜ ଝିଅର ବିବାହ କଥା ନେଇ ବଡ଼ ସମସ୍ୟାରେ ପଡ଼ିଲେ । ସେତେବେଳେ ତାଙ୍କ ମନ୍ତ୍ରୀମାନେ ତାଙ୍କୁ କହିଲେ, "ମହାରାଜ, ଆପଣଙ୍କ ଝିଅ ପଦ୍ମାବତୀ ମହାମୁନି ପିପ୍ପଲାଦଙ୍କୁ ପତି ରୂପରେ ପାଇବେ, ଏହା ତ ଅନ୍ୟଥା କରି ହେବନାହିଁ, ବରଂ ଭାବନ୍ତୁ ଏହା ଏକ ଗର୍ବର ବିଷୟ । କାରଣ ସେ ଉଚ୍ଚ ବଂଶଜ; ମହାନ୍ ତପସ୍ୱୀ । ଆପଣ ପଦ୍ମାବତୀଙ୍କୁ ଆଣି ଋଷିଙ୍କୁ ଦେଖାଇ ଦିଅନ୍ତୁ । ପଦ୍ମାବତୀଙ୍କର କ'ଣ ଇଚ୍ଛା ଦେଖନ୍ତୁ ।"

ମନ୍ତ୍ରୀମାନଙ୍କ କଥା ଶୁଣି ରାଜାଙ୍କ ମନ କିଛିଟା ଶାନ୍ତ ହେଲା । ସେ ରାଜକୁମାରୀ ପଦ୍ମାବତୀଙ୍କୁ ଡକାଇ ସମସ୍ତ କଥା କହିଲେ । ପଦ୍ମାବତୀ ଋଷିଙ୍କୁ ବିବାହ କରିବାକୁ ସ୍ୱୀକୃତ ହେଲେ । ରାଜା ତା'ପରେ ଦୁହିଁଙ୍କୁ ଯଥାବିଧି ବିବାହ ଦେଲେ ।

ବିବାହ ପରେ ମୁନି ପିପ୍ପଲାଦ ପଦ୍ମାବତୀଙ୍କୁ ସଙ୍ଗରେ ନେଇ ନିଜ ଆଶ୍ରମକୁ ଚାଲିଗଲେ । ରାଜା ଝିଅକୁ ଖୁବ୍ ଭଲ ପାଉଥିଲେ । ସେଥିପାଇଁ ସେ ଜ୍ୟେଷ୍ଠପୁତ୍ରଙ୍କୁ ରାଜସିଂହାସନର ଦାୟିତ୍ୱ ଦେଇ ନିଜର ପାଞ୍ଚଜଣ ପତ୍ନୀଙ୍କ ସହ ବାନପ୍ରସ୍ଥ ନେଇ ସେହି ଜଙ୍ଗଲରେ ଝିଅର ଆଶ୍ରମ ନିକଟରେ ନିଜର ଆଶ୍ରମ ବନାଇ ରହିଲେ ।

ଦିନକର କଥା । ପଦ୍ମାବତୀ ନଦୀକୁ ସ୍ନାନ କରିବାକୁ ଯାଇଥା'ନ୍ତି । ଧର୍ମଦେବ ତାଙ୍କୁ ପରୀକ୍ଷା କରିବା ପାଇଁ ଏକ ସୁନ୍ଦର ଯୁବକର ବେଶ ଧାରଣ କରି ପଦ୍ମାବତୀଙ୍କ ପାଖକୁ ଯାଇ

୭. ପାର୍ବତୀ ବିବାହ



କହିଲେ, "ହେ ସୁନ୍ଦରୀ, ତୁମର ଏ ଅପରୂପ ଯୌବନକୁ ନେଇ ଏହି ବୃଦ୍ଧ, ସ୍ଥବିର ସ୍ୱାମୀ ପାଖରେ ରହି କାହିଁକି ଜୀବନକୁ ବ୍ୟର୍ଥ କରୁଛ? ତୁମର ସୌନ୍ଦର୍ଯ୍ୟ ପ୍ରକୃତିର ଦାନ। ତାକୁ ନଷ୍ଟ କରନାହିଁ। ବରଂ ଭାବି ବିଚାରି କାର୍ଯ୍ୟ କର ଯେପରି ପରେ ପଶ୍ଚାତାପ କରିବ ନାହିଁ। ହୁଏତ ତୁମେ ତୁମ ମାତାପିତାଙ୍କ କଥା ସ୍ୱୀକାର କରି ଏପରି ବୃଦ୍ଧଙ୍କୁ ବିବାହ କରିଛ। ମାତାପିତା କେବଳ ନିଜର ସ୍ୱାର୍ଥ ଦେଖନ୍ତି। କିନ୍ତୁ ନିଜର ଭବିଷ୍ୟତ ବିଷୟରେ ନିଜେ ଭାବିବା ଉଚିତ୍। ସେମାନେ ତ ନିଜ କର୍ତ୍ତବ୍ୟରୁ ମୁକ୍ତ ହେବାକୁ ଚାହୁଁଥିଲେ। କିନ୍ତୁ ତମେ ସେମାନଙ୍କୁ ଖୁସି କରିବା ପାଇଁ ନିଜ ଜୀବନ ଅଯଥାରେ ନଷ୍ଟ କରିବାରେ କୌଣସି ମାନେ ହୁଏ ନାହିଁ। ତମେ ମୋ କଥା ମାନ। ମୁଁ ତୁମର ଯୋଗ୍ୟ ସ୍ୱାମୀ। ମୋ ସହିତ ଆସ ମୋର ରାଜ୍ୟର ରାଣୀ ହୋଇ ଜୀବନ ସାର୍ଥକ କର।"

ହଠାତ୍ ଜଣେ ଅଜଣା ଅଶୁଣା ଲୋକଠାରୁ ଏପରି ବାଜେ କଥା ଶୁଣି ପଦ୍ମାବତୀ ରାଗି ଉଠିଲେ। ସେ କହିଲେ, "ତମେ କିଏ? ଏପରି ଅସାମାଜିକ ଓ ଅଭଦ୍ର ଭାବରେ କଥାବାର୍ତ୍ତା କରୁଛ? ମୋର ମୋ ସ୍ୱାମୀଙ୍କ ସହ ସମ୍ପର୍କ ଉପରେ କଥା କହିବାର ଅଧିକାର ତମକୁ ବା କିଏ ଦେଲା। କେଉଁ ସାହସରେ ତମେ ମୋ ମୁହଁ ଉପରେ ମୋର ସ୍ୱାମୀଙ୍କର ନିନ୍ଦା କରୁଛ? ଅତ୍ୟନ୍ତ ପାପୀ ନ ହେଲେ କେହି ଏପରି କାର୍ଯ୍ୟ କରେ? ଏବେ ତୁମେ ନିଜ ପାପର ଫଳ ଭୋଗ କର୍। ତୁମର କ୍ଷୟ ରୋଗ ହୋଇଯାଉ।"

ଅଭିଶାପ ଶୁଣି ଧର୍ମଦେବ ବ୍ୟସ୍ତ ହୋଇ ପଡ଼ି କହିଲେ, "ହେ ସାଧ୍ୱୀ ମୁଁ ରାଜା ନୁହେଁ, ମୁଁ ସ୍ୱୟଂ ଧର୍ମଦେବ। ତୁମର ପାତିବ୍ରତ୍ୟର ପରୀକ୍ଷା କରିବା ପାଇଁ ମୁଁ ଏଠାକୁ ଆସିଥିଲି। ତୁମେ ମୋତେ କ୍ଷମା କର ଓ ଅଭିଶାପ ଫେରାଇ ନିଅ।"

ପଦ୍ମାବତୀ ଟିକିଏ ଆଶ୍ଚର୍ଯ୍ୟ ହୋଇ କହିଲେ, "ହେ ମହାତ୍ମା, ମୁଁ ମୋର ଅଭିଶାପକୁ କୌଣସି ମତେ ଫେରାଇ ନେଇ

ଆରମ୍ଭ ନାହିଁ । ଆପଣ ସବୁ ଯୁଗରେ ନିଜର ସ୍ୱର ଧର୍ମରୁ ଗୋଟିଏ ଧର୍ମକୁ ବାଛି ଜୀବନ ରହୁଛନ୍ତି ।"

ବଶିଷ୍ଠ ପଦ୍ମାବତୀଙ୍କ ବିଷୟରେ ଏହି ଗଳ୍ପ କହିବା ପରେ, ମେନକା ଓ ହିମବାନଙ୍କୁ କହିଲେ, "ବାହ୍ୟଭାବରେ ଶିବ ଶ୍ମଶାନବାସୀ ହେଲେ ମଧ୍ୟ ସେ ଭଗବାନ୍ । ତାଙ୍କର ଜୀବନଦର୍ଶନ ଆପଣମାନେ କ'ଣ ବୁଝିବେ ? ସେ କାହିଁକି ଶ୍ମଶାନରେ ରହନ୍ତି । ଭୂତ ପିଶାଚଗଣ ବା କାହିଁକି ତାଙ୍କ ସହିତରେ ଗୁଡ଼ାଏ ସାପ ବା କାହିଁକି ତାଙ୍କ ଦେହରେ ମାଳ ପରି ପଡ଼ିଥା'ନ୍ତି ଏସବୁ ସେହି ସଦାଶିବହିଁ ଜାଣନ୍ତି । ତାଙ୍କର ଅକଳନ ବିଭୂତି ଓ ଶକ୍ତିକୁ ଜାଣିବା ଦୁର୍ଲଭ ବ୍ୟାପାର । ତାହା ମନର ଅତୀତ; ବହୁ ଗୂଢ଼ ରହସ୍ୟ ଦ୍ୱାରା ଆଚ୍ଛାଦିତ । କିନ୍ତୁ ଏତିକି ଜାଣନ୍ତୁ ପାର୍ବତୀ ହେଉଛନ୍ତି ପରଶକ୍ତି । ସେମାନଙ୍କର ବିବାହ ଦୈବ ଅଭିପ୍ରେତ । ଏବେ ଦିବ୍ୟସମୟ ଉପସ୍ଥିତ । ଆପଣ ନିଜ କନ୍ୟାଙ୍କୁ ଶୀଘ୍ର ଶିବଙ୍କୁ ସମର୍ପଣ କରନ୍ତୁ ।"

ବଶିଷ୍ଠଙ୍କ ଉପଦେଶରେ ମେନକା ଓ ହିମବାନ୍ ଓ ପରିବାରର ଅନ୍ୟମାନେ ମଧ୍ୟ ସନ୍ତୁଷ୍ଟ ହେଲେ । ତା'ପରେ ସେମାନେ ବଶିଷ୍ଠଙ୍କୁ କହିଲେ, "ଆପଣଙ୍କ ଆଦେଶରେ ମୁଁ ମୋର କନ୍ୟାକୁ ଶିବଙ୍କ ସହିତ ବିବାହ ଦେବି । ଆପଣ ବିବାହ ପାଇଁ ଲଗ୍ନ ଆଦି ସ୍ଥିର କରନ୍ତୁ ।"



ସମସ୍ତେ ବିବାହ ପାଇଁ ପ୍ରସ୍ତୁତ ହେବାକୁ ଲାଗିଲେ । ବଶିଷ୍ଠ ମାଘ ଶୁକ୍ଳ ଏକାଦଶୀକୁ ବିବାହ ପାଇଁ ଲଗ୍ନ ଧାର୍ଯ୍ୟ କଲେ । ତା'ପରେ ସାତଜଣ ଋଷି ପାର୍ବତୀଙ୍କ ଘର ପଟର ସବୁ କାର୍ଯ୍ୟ ଶେଷ କରି ଶିବଙ୍କ ପାଖକୁ ଗଲେ । ସେଠାରେ ସେମାନେ ସମସ୍ତ କାର୍ଯ୍ୟ ଭାର ବ୍ରହ୍ମା, ବିଷ୍ଣୁ ଓ ଦେବତାମାନଙ୍କ ଉପରେ ଦେବା ପାଇଁ କହିଲେ ।

ଏଣେ ପାର୍ବତୀଙ୍କ ବିବାହ ପାଇଁ ପ୍ରସ୍ତୁତି ବଡ଼ ଜୋରରେ ହେଉଛି । ଯେତେହେଲେ ରାଜକନ୍ୟା । ସେହିପରି ଭାବରେ ସବୁ କାମ ପାଉଛି । ଆବଶ୍ୟକ ସାମଗ୍ରୀ ସବୁ ଏକତ୍ରିତ କରାଗଲା । ବନ୍ଧୁବାନ୍ଧବମାନଙ୍କ ପାଖକୁ ନିମନ୍ତ୍ରଣ



ପତ୍ର ପଠାଗଲା । ହିମବାନ୍ ନିଜ ମନ୍ତ୍ରୀମାନଙ୍କ ଦ୍ୱାରା ବିବାହ ପାଇଁ ସମସ୍ତ ପ୍ରସ୍ତୁତି କାର୍ଯ୍ୟ କରାଇଲେ ।

ଯେତେ ଜଣାଶୁଣା ସୌଭାଗ୍ୟବତୀ ନାରୀମାନେ, ଋଷିପତ୍ନୀମାନେ, ଦେବୀମାନେ ସମସ୍ତେ ମିଳି କନ୍ୟାଙ୍କୁ ମଙ୍ଗଳ ସ୍ନାନ କରାଇଲେ । ସମସ୍ତେ ରେଶମୀ ବସ୍ତ୍ର ପିନ୍ଧିଥା'ନ୍ତି । ପାର୍ବତୀ ସୁନ୍ଦର ବହୁମୂଲ୍ୟ ପଟ୍ଟବସ୍ତ୍ର ପିନ୍ଧିଥା'ନ୍ତି ଓ ନାନା ଅଳଙ୍କାରରେ ଭୂଷିତ ହୋଇଥା'ନ୍ତି; କଣ୍ଠରେ ନାନା ପ୍ରକାର ପୁଷ୍ପମାଳ୍ୟ ସବୁ ଦିଆ ଯାଇଥାଏ ।

ସମସ୍ତ ନିମନ୍ତ୍ରିତ ବନ୍ଧୁବାନ୍ଧବ କନ୍ୟା ପାଇଁ ବହୁମୂଲ୍ୟର ଉପହାର ସବୁ ନେଇ ଆସିଥା'ନ୍ତି । ସ୍ୱର୍ଣ୍ଣକମଳ, ମୁକ୍ତା, ମାଣିକ୍ୟ ଓ ହୀରାରେ ଉପହାରମାନ ଭରା ହୋଇଥାଏ । କିଏ କିଏ ବା ହାତୀ, ଘୋଡ଼ା, ରଥ ଆଦି ଉପହାର ଦେଉଥା'ନ୍ତି । ହିମବାନ୍ ସମାଗତ ବନ୍ଧୁ-ବାନ୍ଧବମାନଙ୍କୁ ଉପଯୁକ୍ତ ଭାବରେ ଅତିଥି ସତ୍କାର କରୁଥା'ନ୍ତି । କୁହାଯାଏ ଦଶହଜାର ଯୋଜନର ଦୀର୍ଘ ଏକ ମଣ୍ଡପ ତିଆରି ହୋଇଥାଏ । ହିମବାନ୍‌ଙ୍କର ରାଜଧାନୀକୁ ଅପୂର୍ବ ରୂପରେ ସଜାଇ ଦିଆ ଯାଇଥାଏ ।

ଶିବଙ୍କ ନିକଟକୁ ଖବର ପଠା ହୋଇଥାଏ ଲଗ୍ନଦିନ ଜଣାଇ । ଶିବ ବ୍ୟସ୍ତ ହୋଇ ନାରଦଙ୍କୁ ସ୍ମରଣ କଲେ । ନାରଦ ତତ୍-କ୍ଷଣାତ୍ ଶିବଙ୍କ ସମ୍ମୁଖରେ ଆବିର୍ଭାବ ହୋଇ ସ୍ମରଣ କରିବାର କାରଣ ପଚାରିଲେ ।

ଶିବ କହିଲେ, "ଦେବତାଙ୍କ ଇଚ୍ଛା ଯୋଗୁ ଓ କଲ୍ୟାଣ ଯୋଗୁ ମୁଁ ପାର୍ବତୀଙ୍କୁ ବିବାହ କରିବାରେ ସମ୍ମତି ଦେଇଛି । ପାର୍ବତୀଙ୍କ ଗୃହରେ ତ ବିବାହର ସବୁ ବ୍ୟବସ୍ଥା ହେଉଛି । ମୋର ତ ଗୃହ ବୋଲି କିଛି ନାହିଁ । ଭୂତ ପିଶାଚଙ୍କ ସହିତ ବୁଲୁଥାଏ । ଏପରି ସ୍ଥଳେ ତମେମାନେ ବିବାହ ପାଇଁ ସହଯୋଗ ନ କଲେ କିପରି ଚଳିବ ?"

ନାରଦ ବହୁତ ଉତ୍ସାହିତ ହୋଇ କହିଲେ, "ନିଶ୍ଚୟ ନିଶ୍ଚୟ ସେସବୁ ତ ଆମର କାମ ।" ସେଇଠାରୁହିଁ ସେ ପ୍ରଥମେ ବ୍ରହ୍ମଲୋକ, ତା'ପରେ ବୈକୁଣ୍ଠଲୋକ ଓ ସମସ୍ତ ଦେବ-

ଦେବୀଙ୍କୁ ନିମନ୍ତ୍ରଣ କଲେ ଓ କି କାର୍ଯ୍ୟରେ କିଏ ନେବ ତାହାର ସୁବନ୍ଦୋବସ୍ତ କଲେ । ତା'ପରେ ସେ ନାଗଲୋକ, ଆଦି ତିନି ଭୁବନର ବାସିନ୍ଦାଙ୍କୁ ନିମନ୍ତ୍ରଣ କଲେ । ନିମନ୍ତ୍ରଣ ପାଇ ସମସ୍ତେ ଆସି ଶିବଙ୍କ କୈଳାସରେ ଏକତ୍ରିତ ହୋଇ ସମସ୍ତ ପ୍ରକାର ବିବାହ କାର୍ଯ୍ୟ ନିର୍ବାହ କଲେ । ବିବାହରେ ବ୍ରହ୍ମା ପୁରୋହିତ ହେଲେ, ବିଷ୍ଣୁ କନ୍ୟାର ଭାଇ ହେଲେ ଓ ଅନ୍ୟ ଦେବତାମାନେ ମଧ୍ୟ କିଛି କିଛି କାର୍ଯ୍ୟ କଲେ ।




ଗରୁଡ଼, ଗନ୍ଧର୍ବ, ଯକ୍ଷନାରୀମାନେ ସପ୍ତମାତା, ଲକ୍ଷ୍ମୀ, ସରସ୍ୱତୀ, ସାବିତ୍ରୀ, ଅରୁନ୍ଧତୀ ଆଦି ମହାନ୍ ପତିବ୍ରତା ନାରୀମାନେ ଶିବଙ୍କୁ ମଙ୍ଗଳସ୍ନାନ କରାଇ ଚନ୍ଦନ ପ୍ରଭୃତି ଦେଇ ସଜାଇଲେ । ନାନା ପ୍ରକାର ରତ୍ନହାର ଓ ଅଳଙ୍କାର ସବୁ ପିନ୍ଧାଇ ତାଙ୍କୁ ବରବେଶରେ ସଜ୍ଜିତ କରାଇଲେ । ତାଙ୍କ ହାତରେ ଦୀକ୍ଷାବନ୍ଧନ ସପ୍ତର୍ଷିମାନେ ବାନ୍ଧିଲେ ଓ ନବଗ୍ରହଙ୍କର ପୂଜା ସମାପ୍ତ କଲେ ।

ପୁରୋହିତ ବ୍ରହ୍ମାଙ୍କ ଆଦେଶରେ ଶିବ ନିଜ ପକ୍ଷର ବ୍ୟକ୍ତିମାନଙ୍କୁ ବରଯାତ୍ରୀ ଭାବରେ ନେଇ ନିଜେ ହିମବାନ୍‌ଙ୍କ ରାଜଧାନୀ ଔଷଧିପୁରକୁ ଯାତ୍ରା କଲେ । ରୁଦ୍ରଗଣଙ୍କ ମଧ୍ୟରୁ କେତେକ କୈଳାସ ରକ୍ଷା କରିବାକୁ ରହିଲେ । ଅନ୍ୟ-ମାନେ ସବୁ ବରଯାତ୍ରୀ ହୋଇ ଗଲେ । ଶିବ ବରବେଶ ପିନ୍ଧି ଶ୍ୱେତ ଐରାବତ ଉପରେ ବସିଲେ । ସରସ୍ୱତୀ ଓ ବ୍ରହ୍ମା ନିଜ ନିଜର ହଂସ ଉପରେ ଓ ବିଷ୍ଣୁ ଗରୁଡ଼ ଉପରେ ବସିଲେ । ଅନ୍ୟ ଦେବୀମାନେ ନିଜ ନିଜ ବାହନ ଉପରେ ବସି ଚାଲିଲେ । ଐରାବତର ପଛରେ ଯାଉଥିବା ନନ୍ଦୀ ଉପରେ ବସି କୁବେର ସମସ୍ତ ରତ୍ନ ନେଇ ଯାଉଥା'ନ୍ତି ।

ବିବାହ ଶୋଭାଯାତ୍ରା ରାଜଧାନୀରେ ପହଞ୍ଚିବା ମାତ୍ରେ ହିମବାନ୍, ପୁରୋହିତ ଗର୍ଗ ମୁନିଙ୍କୁ ଓ ମେନକାଙ୍କୁ ଧରି କିଛିଦୂର ଯାଇ ସେମାନଙ୍କୁ ପାଛୋଟି ଆଣିଲେ । ବ୍ରହ୍ମା, ବିଷ୍ଣୁ ଆଦି ଦେବତାଙ୍କୁ ପ୍ରଣାମ କଲେ ଓ ଶିବଙ୍କୁ କହିଲେ, "ଆପଣ ତ ସର୍ବେଶ୍ୱର । ଆପଣଙ୍କ ଯୋଗୁ ମୁଁ ମଧ୍ୟ ଜଣେ ମହାନ୍ ଲୋକ



ଭାବରେ ଗଣା ହେବ । ଆପଣଙ୍କୁ ଜ୍ୱାଇଁ ଭାବରେ ପାଇ ମୁଁ ଧନ୍ୟ ହୋଇଛି । ଏବେ ମୋର କନ୍ୟା ପାର୍ବତୀର ପାଣିଗ୍ରହଣ କରି ମୋତେ ଓ ମୋର ବଂଶକୁ ପବିତ୍ର କରନ୍ତୁ ।"

ତା'ପରେ ହିମବାନ ଶିବଙ୍କୁ ବସ୍ତ୍ର, ଗନ୍ଧ, ପୁଷ୍ପ ମାଳ ଆଦି ଅର୍ପଣ କଲେ । ତା'ପରେ କିଛି ପାନୀୟର ବ୍ୟବସ୍ଥା କରାଗଲା ।

ବଧୂପକ୍ଷର ସ୍ତ୍ରୀମାନେ କହିଲେ, "ଆହା ଆମ ପାର୍ବତୀର କି ଭାଗ୍ୟ, ଏତେ ସୁନ୍ଦର ବର ପାଇଛି ।" ତା'ପରେ ମେନକା ଯାଇ ଶିବଙ୍କୁ କହିଲେ, "ମୁଁ ଅନ୍ୟମାନଙ୍କଠାରୁ ବାଜେ କଥା ଶୁଣି ଆପଣଙ୍କର ନିନ୍ଦା କରିଛି । ମୋତେ କ୍ଷମା କରନ୍ତୁ । ଆପଣ ଘରକୁ ଆସି ବରପୂଜା ସ୍ୱୀକାର କରି ତେବେ ଉପରକୁ ଯିବେ ।"

ସାରା ରାଜଧାନୀ ଅତି ଜାକଜମକରେ ସାଜ ସଜା ହୋଇଥାଏ । ସମସ୍ତ ବନ୍ଧୁବାନ୍ଧବମାନେ ସୁନ୍ଦର ନୂତନ ବସ୍ତ୍ର ପିନ୍ଧି ନାନା ଅଳଙ୍କାରରେ ଭୂଷିତ ହୋଇ ବୁଲୁଥା'ନ୍ତି । ପାର୍ବତୀ ବିବାହ ପୂର୍ବରୁ ପ୍ରଥା ଅନୁସାରେ ମନ୍ଦିରକୁ ପୂଜା କରିବାକୁ ଗଲେ । ତାଙ୍କୁ ଦେବତାମାନେ ଦେଖି କହିଲେ, "ଆରେ ଇଏ ତ ନିଜେ ସାକ୍ଷାତ୍ ପରାଦେବୀ, ଇଏ ପୁଣି କାହାର ପୂଜା କରିବାକୁ ଯାଉଛନ୍ତି ? ଶିବ ପାର୍ବତୀଙ୍କର ବିବାହ ଯେତେ ଶିଘ୍ର ସମ୍ପନ୍ନ ହେବ ସେତେ ଶିଘ୍ର ଆମର କଷ୍ଟ ଦୂର ହେବ । କାରଣ ତାଙ୍କର ପୁତ୍ରହିଁ ଦେବତାମାନଙ୍କର ସେନାପତି ହୋଇ ରାକ୍ଷସମାନଙ୍କୁ ବିଶେଷତଃ ତାରକାସୁରକୁ ବଧ କରିବେ ।"

ପାର୍ବତୀ ଦେବୀପୂଜା କରି ଫେରିବା ମାତ୍ରେ ବିବାହ ବେଦୀକୁ ଗଲେ ଓ ସେଠାରେ ବିବାହ କାର୍ଯ୍ୟ ଆରମ୍ଭ ହେଲା । ମେନକା ଓ ହିମବାନ୍ ଶିବଙ୍କୁ କନ୍ୟାଦାନ କରି ଆପଣାକୁ କୃତାର୍ଥ ମଣିଲେ । କ୍ରମେ ବିବାହ କାର୍ଯ୍ୟ ଶେଷ ହେଲା । ଦେବୀ, ଦେବା, ଗନ୍ଧର୍ବ, ଯକ୍ଷ, କିନ୍ନରମାନେ ନାନା ଭାବରେ ବରକନ୍ୟାଙ୍କର ମନୋରଞ୍ଜନ କଲେ । ଗନ୍ଧର୍ବ, କିନ୍ନର, ଓ ସ୍ୱର୍ଗର ରୂପସୀ ଅପ୍ସରାମାନେ ନୃତ୍ୟଗୀତ ସବୁ ଅତି ଚମତ୍କାର

ଘରରେ କଲେ । ସମସ୍ତେ ଆନନ୍ଦ ମନରେ ସମୟ କଟାଉଥା'ନ୍ତି । ବିବାହ ପରେ ଭଗବାନ୍ ଶିବ ପାର୍ବତୀଙ୍କ ସହିତ ପ୍ରାୟ ଏକ ସପ୍ତାହ ଶ୍ୱଶୁର ଘରେ ରହିଲେ । ଖୁବ୍ ଖିଆପିଆ ନାଚ ଗୀତ ହେଉଥାଏ ସମସ୍ତେ ଖୁସି ଥା'ନ୍ତି । ସପ୍ତାହେ ପରେ ଶିବ କୈଳାସକୁ ଫେରିଯିବା ପାଇଁ ଇଚ୍ଛା ପ୍ରକାଶ କଲେ । ଗିରି ଓ ମେନକା ପୁଣି ଝିଅ ପାଇଁ ନାନା ପ୍ରକାର ଘର ବେଘର, ହାତୀ, ଘୋଡ଼ା, ରଥ ସବୁର ବ୍ୟବସ୍ଥା କଲେ । କିନ୍ତୁ ଶିବ ସେସବୁ ବାରଣ କରି କହିଲେ, "ଏସବୁ ଆମର କ'ଣ ହେବ । କୈଳାସ ପର୍ବତରେ ପ୍ରକୃତି କୋଳରେ ଆମେ ରହୁଛୁ । ଆପଣଙ୍କ କନ୍ୟା ମୋତେ ପସନ୍ଦ କରି ବିବାହ କରିଛନ୍ତି ମାନେ ମୋର ଜୀବନ ସହିତ ତାକୁ ଏକ ହୋଇ ଚଳିବାକୁ ପଡ଼ିବ ଏବଂ ମୁଁ ଆଶା କରୁଛି ସେ ଆନନ୍ଦର ସହିତ ସେଥିରେ ରାଜି ହେବେ । ଦରକାର ହେଲେ ଆମେ ଅସ୍ଥାୟୀ ଘରରେ ରାଜବାଟୀ ଓ ଦାସଦାସୀ କରିଦେବୁ । କିନ୍ତୁ ଆମର ନିତିଦିନର ଜୀବନ ସଂପୂର୍ଣ୍ଣ ଅନ୍ୟ ପ୍ରକାରର । ଆପଣମାନେ ତ ସବୁ ଜାଣନ୍ତି ଏ ବିଷୟରେ ମୁଁ ଆଉ ବିଶେଷ କ'ଣ ବୁଝାଇବି ।"

କୈଳାସରେ ପହଞ୍ଚି ଶୁଭ କ୍ଷଣରେ ସେମାନେ ଗୃହ ପ୍ରବେଶ କଲେ । ଅନେକ ଦିନ ଧରି ଉତ୍ସବ ଚାଲିଲା । ଶେଷରେ ଶିବ ସମସ୍ତଙ୍କୁ ଯଥେଷ୍ଟ ଉପହାର ଦେଇ ବିଦାୟ ଦେଲେ ।

ଶିବଙ୍କ ଆଜ୍ଞା ଅନୁସାରେ ନଂଦୀ ଏକ ମହାସୌଧ ନିର୍ମାଣ କରିଥିଲେ ଏବେ ତାହାକୁ ଅତି ସୁଂଦର ରୂପରେ ସବୁ ସାଜସଜ୍ଜା କଲେ । ଶିବ ଓ ପାର୍ବତୀ ଏବେ ବିଶ୍ରାମ କଲେ । ଅନ୍ୟମାନେ ନିଜ ନିଜ କାର୍ଯ୍ୟ ନିର୍ବାହ କଲେ । ସେହିଠାରୁ ନବ ଦମ୍ପତିଙ୍କର ନବଜୀବନ ଆରମ୍ଭ ହେଲା । ଦେବୀମାନେ ଅପେକ୍ଷା କରି କରି ରହିଲେ କେବେ ଶିବଙ୍କ ପୁତ୍ରର ଆବିର୍ଭାବ ହେବ ଆଉ ଦେବତାମାନେ ତାରକାସୁରର ଅତ୍ୟାଚାରରୁ ତ୍ରାହି ପାଇବେ ।



# ଜନତାଙ୍କ ପ୍ରତିନିଧି

ନାଗପୁର ଗ୍ରାମରେ ପ୍ରଭାତବାବୁ ଥିଲେ ଜଣେ ମାମଲତକାର । ଗ୍ରାମବାସୀଙ୍କ ସହିତ ଟିକିଏ କଳି ଲାଗିଲେ ସେ ଧମକ ଦିଅନ୍ତି, "ଏସବୁ ଝଗଡ଼ା ଏଠାରେ ସମାଧାନ ହୋଇ ପାରିବ ନାହିଁ । ସେଥିପାଇଁ ମୋତେ ଅଦାଲତର ସାହାଯ୍ୟ ନେବାକୁ ହେବ ।"

ଥରେ ଗ୍ରାମବାସୀମାନଙ୍କ ମଧ୍ୟରେ ଏକ ସମସ୍ୟା ଦେଖା ଦେଲା । ସମସ୍ୟାଟି ହେଉଛି କିଏ ଜନତାଙ୍କର ପ୍ରତିନିଧି ହୋଇ ରାଜଧାନୀକୁ ଯିବ । ଗ୍ରାମବାସୀମାନଙ୍କ ମଧ୍ୟରେ ପ୍ରତିନିଧି ବାଛିବା ଯୋଗୁ ଅନେକ ପ୍ରକାର ମତଭେଦ ଦେଖାଦେଲା । ଶେଷରେ ସମସ୍ତେ ମିଶି କାମଟି ଗ୍ରାମର ମୁଖିଆ ରାମବାବୁଙ୍କୁ ଦେଲେ ।

ରାମବାବୁ ଦୁଇ ରାତି ଛଦ୍ମବେଶରେ ଗ୍ରାମ ସାରା ବୁଲି ଖବର ସଂଗ୍ରହ କଲେ । ତା'ପରେ ଗ୍ରାମବାସୀଙ୍କୁ ପ୍ରସ୍ତାବ ଦେଲେ ଯେ ପ୍ରତିନିଧି ରୂପେ ପ୍ରଭାତବାବୁଙ୍କୁ ପଠାଇଲେ ଭଲ ହେବ ।

"ସବୁ ପ୍ରକାର ଝଗଡ଼ା କରୁଥିବା ପ୍ରଭାତବାବୁ ଆମ ଗ୍ରାମର ପ୍ରତିନିଧି କିପରି ହେବେ ?" ଗ୍ରାମବାସୀମାନେ ଆଶ୍ଚର୍ଯ୍ୟ ହୋଇ କହିଲେ ।

ମୁଖିଆ କହିଲେ, "ଆଗରୁ ମୋର ଧାରଣା ଥିଲା ଯେ ଗ୍ରାମର ସବୁ ଗୋଳମାଳ ପ୍ରଭାତବାବୁଙ୍କ ଯୋଗୁ ହେଉଛି । ଆଉ ଏବେ ଛଦ୍ମବେଶ ଧରି ରାତି ରାତି ବୁଲି ମୁଁ ଦେଖିଲି ମୋର ଧାରଣା ସତ । ଏବେ ସେ ରାଜଧାନୀ ଚାଲିଗଲେ ଗ୍ରାମରେ ଶାନ୍ତି ଫେରି ଆସିବ ।"

ଏବେ ଗ୍ରାମବାସୀମାନେ ସବୁ ବୁଝିପାରିଲେ ଏବଂ ସମସ୍ତେ ଏକମତ ହୋଇ ପ୍ରଭାତବାବୁଙ୍କୁ ଗ୍ରାମର ପ୍ରତିନିଧି କରି ରାଜଧାନୀ ପଠାଇ ଦେଲେ ।





# ସୁଲତାନ ଓ ବାଜପକ୍ଷୀ

ଇରାକ୍ ଦେଶର ଏକ ଛୋଟ ରାଜ୍ୟରେ ଜଣେ ଯୁବକ ଭାଗ୍ୟବଳରୁ ହଠାତ୍ ସୁଲତାନ୍ ହୋଇଗଲେ । ସେ ସର୍ବଦା ଆତ୍ମପ୍ରଶଂସା କରି କହନ୍ତି, "ମୁଁ ଯାହା କରେ ଭାବି ଚିନ୍ତି କରେ ।"

ପ୍ରଜାମାନେ ମଧ୍ୟ ରାଜାଙ୍କୁ ଖୋସାମତ କରିବା ପାଇଁ ସବୁବେଳେ କୁହନ୍ତି, "ଆହା, ସୁଲତାନ୍ଙ୍କର କି ଅଦ୍ଭୁତ ବୁଦ୍ଧି ।"

କିନ୍ତୁ ସୁଲତାନଙ୍କର ଜଣେ ବୃଦ୍ଧ ଉଜିର୍ ଥା'ନ୍ତି । ସେ ସୁବିଧା ପାଇଲେ କୁହନ୍ତି, "ହଜୁର୍, ତରବରରେ କିଛି କାମ କରିବା ଉଚିତ୍ ନୁହେଁ, ବୁଝି ବିଚାରି କାମ କରିବା ଉଚିତ୍ ।"

ନବଯୁବକ ସୁଲତାନ କିନ୍ତୁ ବୁଝିପାରନ୍ତି ନାହିଁ ଯେ ବୃଦ୍ଧ ଉଜିର୍ ବାରବାର ଏପରି କାହିଁକି କୁହନ୍ତି ।

ସୁଲତାନଙ୍କର ଏକ ପୋଷା ବାଜପକ୍ଷୀ ଥାଏ । ସେ ତାକୁ ଅତ୍ୟନ୍ତ ଭଲ ପାଉଥା'ନ୍ତି । ସେ ସର୍ବଦା ସୁଲ୍ତାନ୍ଙ୍କ ପାଖେ ପାଖେ ଥାଏ । ଯେବେ ସୁଲତାନ୍ ଶିକାର କରିବାକୁ ଯା'ନ୍ତି ସେ ଆକାଶରେ ଉଡ଼ି ଉଡ଼ି ପଶୁଙ୍କର ଠାବ କରି ଦେଖାଇଦିଏ ବା କିଛି ବିପଦ ହେଲେ ମଧ୍ୟ ସୂଚନା ଦିଏ ।

ଥରେ କେତେକ ବନ୍ଧୁଙ୍କ ସହ ସୁଲତାନ ଶିକାର କରିବାକୁ ଯାଇଥା'ନ୍ତି । ଅଦୂରରେ ଦେଖିଲେ ସୁନ୍ଦର ହରିଣଟିଏ ଡେଇଁ ଡେଇଁ ଯାଉଛି । ସମସ୍ତେ ଖୁବ୍ ଉତ୍ସାହିତ ହୋଇ ତାକୁ ଚାରିଦିଗରୁ ଘେରିଗଲେ । ସୁଲତାନ୍ ସମସ୍ତଙ୍କୁ କହିଲେ, "ଏ ହରିଣକୁ ନିଶ୍ଚୟ ଧରିବା, "ଯଦି ସେ ପଳାଏ ତେବେ ଯାହା ଯୋଗୁ ଏପରି ହେବ ସେ ଲୋକକୁ କଠୋର ଶାସ୍ତି ଦିଆଯିବ ।"

ହରିଣ ହଠାତ୍ ଏ ବିପଦ ଦେଖି ଦୁଇ-ଗୋଡ଼ରେ ଠିଆ ହୋଇ ଚାରି ପାଖକୁ ଚାହିଁଲା



ଓ ଲୁଦା ମାରି ସୁଲତାନଙ୍କ ମୁଣ୍ଡ ଉପରେ ଛୁଇଁ ଚାଲିଗଲା । ହରିଣ ଏପରି ଚାଲିଯିବାର ଦେଖି ସୁଲତାନ୍ ରାଗି ଉଠିଲେ ଓ କହିଲେ, "ମୁଁ ଏ ହରିଣକୁ ଯିମିତି ହେଉ ମାରିବ ।" ତା'ପରେ ସେ ଘୋଡ଼ାକୁ ଜୋର୍‌ରେ ହରିଣ ପଛରେ ଦୌଡ଼ାଇଲେ । ଜଙ୍ଗଲ ଭିତରେ ଘୋଡ଼ା ଏତେ ଜୋର୍‌ରେ ବୁଦା ମଧ୍ୟରେ ଯାଇପାରୁ ନଥାଏ । ଏଣେ ହରିଣ ଖୁବ୍ ଜୋର୍‌ରେ ଦୌଡ଼ୁଥାଏ । ବାଜପକ୍ଷୀ ହରିଣକୁ ଅନୁସରଣ କରି ଆକାଶରେ ଉଡ଼ି ଉଡ଼ି ଚାଲିଥାଏ । ସୁଲତାନ୍ ବାଜପକ୍ଷୀ ସାହାଯ୍ୟରେ ହରିଣର ଅନୁସରଣ କରୁଥା'ନ୍ତି । ଜଙ୍ଗଲ ଛାଡ଼ି ହରିଣ ଯେତେବେଳେ ଖୋଲା ସ୍ଥାନକୁ ଆସିଲା ସେତେବେଳେ ସୁଲତାନ ତାକୁ ଲକ୍ଷ୍ୟ କରି ଶର ମାରିଲେ । ହରିଣ ଶରାଘାତରେ ଛଟପଟ ହୋଇ ମରିଗଲା । ଶିକାର ପାଇବାରୁ ଖୁସି ହୋଇ ସୁଲତାନ ନିକଟସ୍ଥ ବୃକ୍ଷଛାୟାରେ ବିଶ୍ରାମ ନେଲେ । ପାଖରେ ପଥରଟିଏ ଥିଲା ସେଥିରେ ବାଜପକ୍ଷୀ ମଧ୍ୟ ବସିଲା ।

ବହୁତ ପରିଶ୍ରମ ପରେ ସୁଲତାନଙ୍କୁ ବହୁତ ଶୋଷ ହେଉଥାଏ । ସେ ଦେଖିଲେ ବଡ଼ ବଡ଼ ପତ୍ର ଥିବା କେତେକ ବୁଦାଗଛ । ସେଥିରୁ ଗୋଟିଏ ପତ୍ରରେ କିଛି ପାଣି ଜମା ହୋଇ ଅଛି । ସେ ଭାବିଲେ "ଏତିକି ପାଣିରେ ତୃଷ୍ଣା ନ ମେଣ୍ଟିଲେ ମଧ୍ୟ ଗଳା ତ ଓଦା ହୋଇଯିବ ।" ତା'ପରେ ସେ ଯତ୍ନ ସହକାରେ ପତ୍ରଟି ପାଣିସୁଦ୍ଧା ତୋଳିନେଇ ଧୀରେ ମୁହଁ ପାଖରେ ଧରିଲେ ପିଇବା ପାଇଁ । ପରମୁହୂର୍ତ୍ତରେହିଁ ବାଜପକ୍ଷୀ ଜୋର୍‌ରେ ଝାମ୍ପ ମାରି ପତ୍ରକୁ ଫୋପାଡ଼ି ଦେଲା ଓ ପୁଣି ଯାଇ ପଥର ମୁଣ୍ଡିଆ ଉପରେ ବସିଲା ।

"ଛି, ଏପରି କଲେ କ'ଣ ତୃଷା ମେଣ୍ଟିବ ?" ପୁଣି ସେ ଗଛରୁ ପତ୍ରଟିଏ ଛିଣ୍ଡାଇଲେ ଓ ଗଛ ଉପରୁ ଟପଟପ ପଡ଼ୁଥିବା ପାଣି ଟୋପାକୁ ସେହି ପତ୍ରରେ ଧରିବାକୁ ଚେଷ୍ଟା କଲେ । ଏଥର ମଧ୍ୟ ବାଜପକ୍ଷୀ ଝାମ୍ପ ମାରି ସେଇଟା ତଳେ ପକାଇ ଦେଲା ।

ତୃଷାରେ ଅଧୀର ସୁଲତାନ୍‌ଙ୍କର କ୍ରୋଧ ପ୍ରବଳ ହେଲା । ସେ ପକ୍ଷୀକୁ ପାଖକୁ

ଡାକିଲେ । ପକ୍ଷୀଟି ପାଖକୁ ଆସିବା ମାତ୍ରେ ସୁଲତାନ୍ ଖଣ୍ଡାରେ ତା' ମୁଣ୍ଡଟି କାଟି ପକାଇଲେ ।

କିଛି ସମୟ ପରେ ସୁଲତାନ୍ ଜାଣିବାକୁ ଚାହିଁଲେ ଯେ ପାଣି ଟିଂପୁ ଟିଂପୁ ହୋଇ କେଉଁଠାରୁ ଝରୁଛି । ସେ କୌତୁହଳୀ ହୋଇ ପାହାଡ଼ ମୁଣ୍ଡିଆ ଉପରକୁ ଚଢ଼ିଯାଇ ଦେଖିଲେ ଗୋଟିଏ ବିରାଟ ବିଷାକ୍ତ ସାପର ମୁହଁରୁହିଁ ଟିଂପୁ ଟିଂପୁ ହୋଇ ବିଷ ଝରୁଥିଲା । ବାଜପକ୍ଷୀ ଯେ ବାରବାର ସୁଲତାନଙ୍କ ପ୍ରାଣରକ୍ଷା କରିବାକୁ ଏପରି କରିଥିଲା, ସେକଥା ସେ ହୃଦୟଙ୍ଗମ କରି ଦୁଃଖରେ ଭାଙ୍ଗି ପଡ଼ିଲେ । ଦୂରରେ ଝରଣାଟିଏ ଦେଖିଲେ ମଧ୍ୟ ଆଉ ତୃଷା ମେଣ୍ଟାଇବାକୁ ତାଙ୍କର ଇଚ୍ଛା ହେଲା ନାହିଁ । ସେ ତଳକୁ ଓହ୍ଲାଇ ଆସି ମୃତ ପକ୍ଷୀର ଦେହକୁ କୋଳକୁ ଉଠାଇ ନେଇ ତା' ଦେହରେ ହାତ ବୁଲାଇଲେ ଓ କାନ୍ଦି କାନ୍ଦି ମୂର୍ଚ୍ଛା ହୋଇଗଲେ ।

କିଛି ସମୟ ପରେ ସୁଲତାନ୍‌ଙ୍କ ସୈନ୍ୟ-ସାମନ୍ତମାନେ ସେଠାରେ ଆସି ପହଞ୍ଚିଲେ ଓ ପାଣି ଛିଞ୍ଚି ତାଙ୍କୁ ସଚେତନ କରାଇଲେ । ସୁଲତାନ୍‌ଙ୍କୁ ପ୍ରବୋଧ ଦେବା ପାଇଁ ସମସ୍ତେ କହିଲେ, "ଯାହା ହେବାର ଥିଲା ହେଲା, ଆଉ ମନକଷ୍ଟ କରି ଲାଭ କ'ଣ ?" କିନ୍ତୁ ସୁଲ୍‌ତାନ୍‌ଙ୍କ ମନ ପଶ୍ଚାତାପରେ ଭରିଗଲା ।

ସେ ସବୁ ସମୟରେ ବାଜପକ୍ଷୀ କଥାହିଁ ଭାବୁଥା'ନ୍ତି । ସେ ଏଭଳି ଜଘନ୍ୟ କାର୍ଯ୍ୟ କିପରି କରିପାରିଲେ ସେଇକଥା ଭାବି ସେ ଅତ୍ୟନ୍ତ ଗ୍ଲାନି ବୋଧ କରୁଥିଲେ । କିନ୍ତୁ ଏତିକିବେଳେହିଁ ଉଜୀରଙ୍କ ଚେତାବନୀ ତାଙ୍କର ମନେ ପଡ଼ିଲା ।

ନିଜ ଅନୁଭୂତିରୁହିଁ ସୁଲ୍‌ତାନ୍ ଜାଣି ପାରିଲେ ଯେ ବୃଦ୍ଧ ଉଜୀର୍ କାହିଁକି ତାଙ୍କୁ ବାରବାର ସାବଧାନ କରି ଦେଉଥିଲେ କି ଭାବିଚିନ୍ତି କାମ କରିବ, ତରବରରେ କିଛି କାମ କରିପକାଇବ ନାହିଁ ।



# ଆଫ୍ରିକାର ହାତୀ

ଖ୍ରୀଷ୍ଟପୂର୍ବ ୨୧୮ ଶତାବ୍ଦୀରେ ଆଫ୍ରିକାର ହାନିବାଲ ନାମକ ଜଣେ ସେନାପତି ରୋମାନଙ୍କ ସହିତ ଯୁଦ୍ଧ କରିଥିଲେ । ହାନିବାଲ୍‌ଙ୍କ ସହିତ ଥିଲେ ବହୁତ ହାତୀ । ଆଲ୍‌ପସରୁ ଇଟାଲୀ ଯିବା ବାଟରେ କେତେକ ହାତୀ ମରିଗଲେ । ହାତୀମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ଆଫ୍ରିକାର ଓ ଅନ୍ୟଗୁଡ଼ିକ ଆସିଥିଲେ ଭାରତରୁ ।

ହୁଏତ ବହୁ ପୁରାତନ କାଳରେ ସଂସାରରେ ଅନେକ ହାତୀ ଥିଲେ । କିନ୍ତୁ ଏବେ କେବଳ ଭାରତ ଓ ଆଫ୍ରିକାରେ ହାତୀମାନେ ଦେଖାଯା'ନ୍ତି । ଏହି ଦୁଇପ୍ରକାର ହାତୀମାନଙ୍କ ମଧ୍ୟରୁ ଆଫ୍ରିକାର ହାତୀ ଆକାରରେ ବଡ଼ । ଏମାନଙ୍କ କାନ ଏତେ ବଡ଼ ଯେ ସେମାନେ ପଙ୍ଖାର କାମ ଦିଅନ୍ତି ଓ କାନ ସବୁ ଶୁଣିବା ଅପେକ୍ଷା, ଶରୀରକୁ ଶୀତଳ ରଖିବାରେ ବେଶି ଉପଯୋଗ ହୁଅନ୍ତି ।

ଭାରତର ହାତୀମାନେ ଛାୟାପୂର୍ଣ୍ଣ ଘନଜଙ୍ଗଲରେ ବାସ କରନ୍ତି । ଆଫ୍ରିକାର ହାତୀଙ୍କ ପରି ସେମାନଙ୍କର ଏତେ ବଡ଼ କାନର ଆବଶ୍ୟକତା ନଥାଏ । ଆଫ୍ରିକାର ହାତୀମାନଙ୍କ ମୁଣ୍ଡ ଅପେକ୍ଷାକୃତ କଳ । ଶୁଣ୍ଢରେ ଅଧିକ ଭାଙ୍ଗ ଥାଏ ଓ ଶେଷରେ ବଡ଼ ଦୁଇଟି ଯୋଡ଼ ଥାଏ । ସେମାନଙ୍କ ଦାନ୍ତ ମଧ୍ୟ ଅଧିକ ଲମ୍ବା ।

ସେମାନେ ସାଧାରଣତଃ କେତେଗୁଡ଼ିଏ ପରିବାର ମିଳି ଦଳଟିଏ ଗଢ଼ନ୍ତି । ସେଥିରେ ମାଈ ହାତୀ ଓ ଛୁଆମାନେ ଥା'ନ୍ତି, ପୁରୁଷ ହାତୀମାନେ ଟିକିଏ ଦୂରରେ ଥା'ନ୍ତି, କିନ୍ତୁ ବିପଦ ପଡ଼ିଲେ ସାହାଯ୍ୟ କରନ୍ତି ବା ଦଳ ସହିତ ରହିଥା'ନ୍ତି । ମାଈହାତୀର ଛୁଆ ହେଲେ ଅନ୍ୟ ଏକ ମାଈହାତୀ ଆସି ତାକୁ ସାହାଯ୍ୟ କରେ ।

ଆଫ୍ରିକାର ହାତୀମାନେ ପଚାଶ ବର୍ଷ ଓ ଭାରତୀୟ ହାତୀମାନେ ପ୍ରାୟ ସତୁରୀ ବର୍ଷ ପର୍ଯ୍ୟନ୍ତ ବଞ୍ଚନ୍ତି ।



# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ଅକ୍ଟୋବର ୧୯୮୫ ସଂଖ୍ୟାରେ ପ୍ରକାଶ ପାଇବ



M. Natarajan



A. L. Syed

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଶବ୍ଦ ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଅଗଷ୍ଟ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର । ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ । ★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

## ଜୁନ୍ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : କୁକୁର କୁକୁଡ଼ା ଶିଖାଇଲେ ଦେଖ, ଭେଦଭାବ ଛାଡ଼ି ରହିବା !

ଦ୍ୱିତୀୟ ଚିତ୍ର : ବଳଦ ଦ ଭାଇ କହୁଛନ୍ତି ଦେଖ, ବାଣ୍ଟି କୁଣ୍ଟି ସବୁ ଖାଇବା !!

ପୁରସ୍କାର ବିଜୟିନୀ : ଇନ୍ଦିରା ରଥ, ବାଣୀବିହାର (ଭୁବନେଶ୍ୱର)

ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

## ପ୍ରଶ୍ନମାଳାର ଉତ୍ତର

୧. ତିନି ଚତୁର୍ଥାଂଶ । ୨. ବୁଧ ଗ୍ରହ । ୩. ପ୍ଲୁଟୋ । ୪. ଗୁରୁ ଗ୍ରହ ।
୫. ବିଷୁବରେଖାଠିଁ ୬୩୭୮ କିଲୋମିଟର (ପ୍ରାୟ ୩,୯୬୩ ମାଇଲ) ।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188, Arcot Road, Madras-600 026 (India). Controlling Editor: NAGI REDDI


ଫୁଟବଲ୍ ହେଉଛି ମୋର ଅତି ପ୍ରିୟ ଖେଳ । ଖେଳ
ପଡ଼ିଆରେ ପ୍ରତିଦ୍ୱନ୍ଦୀ ଖେଳାଳୀ ଠାରୁ ବଲ୍ ଛଡ଼େଇନେଇ
ଗୋଟାକ ପରେ ଗୋଟାଏ ଗୋଲ ଦେଲାବେଳେ ଦର୍ଶକମାନଙ୍କ
ତାଳିମାଡ଼ରେ ମୋଛାତି ଫୁଲି ଉଠେ । ବାଃ... କିମଜା !
ବାପା କହନ୍ତି ଆହୁରି ଭଲ ଖେଳିବା ଲାଗି, ଭଲ ସ୍ୱାସ୍ଥ୍ୟ ଦରକାର ।
ସେଇଥିପାଇଁତ ମୁଁ ଦିନକୁ ଦୁଇଥର ହର୍ଲିକ୍ସ ପିଉଛି ।
Horlicks
The Great Nourisher
ପୁଷ୍ଟି ଯୋଗାଇବାରେ ଅତୁଳନୀୟ

# ମାଲ୍‌ଟୋଭା ଦିନି
# କିଛି କରିଦେଲେ ଏକଗାଦରେ ଚମତ୍କାର

[illegible] ମିନିର ଜନ୍ମଦିନ । ପୁଣି ବଡଟା ପାଇଁ
... କରିବାର ମଉଜମଉଲିସ କଲେ,
ମହାଖୁସିରେ ମାଲଟୋଭା ପିଇଲେ,
କେକ ଯାହା ବଂଟିଯାଇଥିଲା ଆନନ୍ଦରେ
ଖାଇଲେ । ସବୁରେ ଭି ଚମତ୍କାର କେକ ।
ଚକୋଲେଟରେ ଭରପୁର, ଫୁଲପୁରି ଡ୍ୟାଣ୍ଡରେ
ସଜା । କି ମଜା ହେଲା "ମ୍ୟୁଜିକାଲ ଗେମ୍‌"
ଖେଳରେ । ମିନିଙ୍କୁ କି ସୁନ୍ଦର ସୁନ୍ଦର ପ୍ରେଜେଣ୍ଟ-
ସବୁ ମିଳିଲା । ଆଉ କେବେ । ମିନିର ଜନ୍ମଦିନ
ଅସଲ ସେ ଝୁପସୁପ ହୋଇ ଉଡିଯାଏ ।

### "କଥା କଣ, ମିନ ?"

"ଭାଉ, ଅନାଥାଶ୍ରମର ଧୀରୁ କୁହେ,
ମମୀ ତାକୁ ଡାକି ଖାଇବାକୁ ଡାକିଥିଲା ।
ସେ କେବେ ଜନ୍ମଦିନ ପାର୍ଟିକୁ ଯାଇନି ।
ଅନାଥାଶ୍ରମରେ ଜନ୍ମଦିନ କେବେ ମନାନ୍ତି ନାହିଁ ।
ତାର ଏଇ ଶନିବାର ଦିନ ଜନ୍ମଦିନ ।"
ମିନି ଆଖିରୁ ବଡ ବଡ ଦି ଟୋପା ଲୁହ
ଗଡିଗଲା । କାହାରି ମୁହଁରେ କଥା ନାହିଁ ।
ଧୀରୁକୁ ସମସ୍ତେ ଜାଣନ୍ତି, ଭଲ ପାନ୍ତି ।
କିନ୍ତୁ ସେ ପିଲାଟି ମୁହଁରେ କେହି କେବେ
ହସ ଦେଖି ନାହାନ୍ତି ।

### ସଲିମ ଏକ ବୁଦ୍ଧି ପାଇଲା···

ମୁରୁକେଇ ହସି ସଲିମ କହିପକାଇଲା ।
କେମିତି ହେବ ଧୀରୁ ପାଇଁ ଯଦି ଗୋଟାଏ
ଚମତ୍କାର ପାର୍ଟି କରାଯାଏ । ସମସ୍ତେ କହିଲେ
ସତରେ ବଢିଆ ବୁଦ୍ଧି । ଭାଇ ତୁ ତା ପକେଟ
ମନିରୁ କିଛି ଟଙ୍କା ବଂଚେଇ ରଖିଛି ।
ସେଥିରେ ସେ ଦେବ । କେଣ୍ଟୁ କହିଲା ତା
ମା' କେକ ତିଆରି କରିଦେବେ ।
ମାଳତି କହିଲା ସେ ନିଜ ଅଙ୍କୁ କିଛି କରିବ ।
ମିନି ତା ପ୍ରେଜେଣ୍ଟରୁ କିଛି ଦେବ ବୋଲି
କହିଲା । ଦଲକା ପାଇଙ୍କ କି ଉତ୍ସାହ ।
ଏଇଟା ତାଙ୍କର ବଡ ମଜାଦାର ଗୋପନ କଥା ।

### ଧୀରୁ ପାଇଁ ଏକ ବିସ୍ମୟ !

ଶନିବାର ଦିନ ଧୀରୁକୁ ନିମନ୍ତ୍ରଣ କରାଗଲା
ସଲିମ ଘରକୁ । କେହି ତାକୁ ସ୍ୱାଗତ କରିବାକୁ
ନ ଥିଲେ, ତେଣୁ ସେ ବଡ ଚିନ୍ତିତ
ହୋଇପଡିଥିଲା । ସେ ଦରଜା ଠେଲିଲା —
ଦରଜା ଖୋଲି ଥିଲା । "କେହି ଅଛନ୍ତି ?"
ଘର ଅଂଧାର । ହଠାତ ଆଲୁଅ ଜଳି ଉଠିଲା ଓ
ସମସ୍ତେ ଗାଇ ଉଠିଲେ; 'ହ୍ୟାପି ବାର୍ଥଡେ' —
ଧୀରୁର ଅନାଥାଶ୍ରମର ସାଙ୍ଗସବୁ ଓ
ମାଲଟେ'ସ ଦଳ । ଟେବୁଲ ଉପରେ ଥୁଆ
ହୋଇଥିଲା ନାଲି ଓ ଧଳା ରଙ୍ଗର ଗୋଟାଏ
ବଡ଼ କେକ୍ । ଚାରିଆଡେ ବେଲୁନ ଝୁଲୁଥାଏ
ଆଉ ଧୂଆଁ ଉଠୁଥାଏ ଗରମ ଗରମ ମାଲଟୋଭା
କପରୁ । ଉପ୍ରେଜେଣ୍ଟ ବି ଥୁଆ ହୋଇଥାଏ ।
ସତରେ ଧୀରୁ ପାଇଁ ଏକ ବିସ୍ମୟ ପାର୍ଟି ।
କାରଣ ତାର ଆଖିରେ ଲୁହ ଉଛୁଳି ଉଠୁ
ଥାଏ, କିନ୍ତୁ ମୁହଁରେ ଥିଲା ଏକ ଖୋଲା ହସ ।

### ମାଲଟୋଭାର ପାର୍ଥକ୍ୟ ଜାଣିଦିଅ

ବାସ୍ତବିକ, ମାଲଟୋଭା ପିଉଥିବା ପିଲାମାନେ
ପିଅନ୍ତି ଜୀବନର ସବୁ ଭଲ ଜିନିଷ ପାଇଁ
ଅପରିହାର୍ଯ୍ୟ । କାରଣ ପ୍ରତିଟି କପ
ମାଲଟୋଭାରେ ରହିଛି ଯୁନେଲି ଗହମ,
ବାର୍ଲି, ଖାଣ୍ଟି ଦୁଧ, ସମୃଦ୍ଧ କୋକୋ ଓ ଭିଟାମିନ
ସବୁ ଭଲ ଗୁଣ । ଏହା ଶରୀରରେ ଅଧିକ
ଭଲଭାବେ ପ୍ରତିରୋଧକ ଶକ୍ତି ଗଢ଼ି ତୋଳେ ।
ବେଶୀ ଶକ୍ତି ଦିଏ, ବେଶୀ ଷ୍ଟାମିନା ଦିଏ ।
ଆପଣଙ୍କ ପିଲାମାନଙ୍କୁ ଦିଅନ୍ତୁ ମାଲଟୋଭା ।
ଆପଣ ଦେଖିବେ ଆପଣଙ୍କ ଆଗରେ ସେମାନେ
ବଢ଼ି ଚାଲିଛନ୍ତି ସୁସ୍ଥ, ସବଳ ହୋଇ ।
ମାଲଟୋଭା ଆପଣଙ୍କ ପିଲାମାନଙ୍କୁ ସବୁବେଳେ
ପ୍ରାଣୋଚ୍ଛଳ କରି ରଖେ ।

### ମାଲଟୋଭା କ୍ଲବରେ ଯୋଗ ଦିଅନ୍ତୁ

ଏହା ଅତି ସହଜ । ଆପଣ ଏତିକି କରନ୍ତୁ—
୩ଟି ୫୦୦ ଗ୍ରାମ ଜାରର ଲେବଲ ଓ ଢିଙ୍କର
ସୀଲ କିମ୍ବା ତିନୋଟି ୫୦୦ ଗ୍ରାମ ରିଫିଲ
ପ୍ୟାକର ଉପର ଫ୍ଲାପ ପଠାନ୍ତୁ ଏହି
ଠିକଣାରେ — ଦି ମାଲଟୋଭା କ୍ଲବ, ୪ ମହଲା,
ଭଣ୍ଡାରୀ ହାଉସ, ୯୧, ନେହରୁ ପ୍ଲେସ,
ନୂଆ ଦିଲ୍ଲୀ ୧୧୦ ୦୧୯ ।
ଆଉ ଆପଣ ହୋଇଗଲେ ଦଳର !




JIL ଜଗତଜିତ ଇଣ୍ଡଷ୍ଟ୍ରିଜ ଲିମିଟେଡ

**ଭିଟାମିନରେ ଭରପୁର ମାଲଟୋଭା: ସ୍ୱାସ୍ଥ୍ୟ, ବଳ ଓ ଶକ୍ତିଦାୟକ**

SIMOES/JIL/002/85 ORI

# ପେନସିଲ୍ ମଧ୍ୟରେ ନଟରାଜ ଯାର ଅପ୍ରତିଦ୍ୱନ୍ଦ୍ୱୀ ପେନସିଲ୍ ଲେଖା ଚମତ୍କାର

'ନଟରାଜରେ ଲେଖିବାର ମଜା ହିଁ ଅଲଗା' ଏହାହିଁ ହେଉଛି ନଟରାଜକୁ ଭଲପାଉଥିବା ଲୋକଙ୍କ ମନର କଥା ।
ନ ଟୁଟିବ ବା ଭାଙ୍ଗିବ-ନଟରାଜରେ ଲେଖା ହୁଏ ବଢ଼ିଆ । ଅଢ଼ ହିଁ, ବେଶୀ ଗାଢ଼ା ଓ ବେଶ ମୁନ୍ଆସିବେ ।
ଭାଙ୍ଗିବାର ତ ପ୍ରଶ୍ନ ହିଁ ନାହିଁ ! ଏପରି ଅନ୍ୟ ଯେତେ ପ୍ରକାର ପେନସିଲ୍ ଅଛି ତା ତୁଳନାରେ ନଟରାଜରେ ହିଁ ବେଶୀ ଦିନ ଲେଖି ହୁଏ । ଏହାର ଅର୍ଥ ଲେଖିବାରେ ବେଶୀ ମଜା ମିଳେ, ବେଶୀ ଦିନ ଲେଖି ହୁଏ ।

ବଉଳ
ରଙ୍ଗୀନ
ଡିଜାଇନରେ
ମଧ୍ୟ ମିଳୁଛି



## ନଟରାଜ ପେନସିଲ




**ଲେଖିବାରେ ନ ଥକେ, ବେଶୀ ଦିନ ଟେକେ**

ହିନ୍ଦୁସ୍ତାନ ପେନସିଲ୍ସ ପ୍ରା. ଲି.,
ବମ୍ବେ ୪୦୦ ୦୦୧ ର ଏକ ଉତ୍କୃଷ୍ଟ ଉତ୍ପାଦନ